ବିଶ୍ୱନାଥ କରଙ୍କ ଦ୍ୱାରା ସଂପାଦିତ

# ଉତ୍କଳ ସାହିତ୍ୟ



## ଆମ୍ଲିକା



ବିଶ୍ୱନାଥ କରଙ୍କ ଦ୍ୱାରା ସଂପାଦିତ

ଉତ୍କଳ ସାହିତ୍ୟ—୧୭

# ଅମ୍ବାଳିକା

ସଂଗ୍ରାହକ ଓ ପ୍ରକାଶକ

ଉତ୍କଳ ସାହିତ୍ୟ ବିକାଶ

କାଳୀଗଳି, କଟକ—୨

# ସୂଚନା

ଆମ ସାଂସ୍କୃତିକ ଇତିହାସରେ 'ଉତ୍କଳ ସାହିତ୍ୟ' (୧୮୯୭) ପତ୍ରିକା ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଲାଭ କରିଛି । ଶ୍ରୀ ବିଶ୍ୱନାଥ କର (୧୮୬୪-୧୯୩୪) ଏହି ପତ୍ରିକାର ଥିଲେ ପ୍ରାଣପ୍ରତିଷ୍ଠାତା । ତାଙ୍କରି ସୁଦକ୍ଷ ସମ୍ପାଦନାରେ ପତ୍ରିକାଟି ଦୀର୍ଘ ଅଠତିରିଶ ବର୍ଷକାଳ ପ୍ରକାଶ ପାଇଥିଲା ଏବଂ ଆମର ଜାତୀୟ ଜୀବନରେ ଗଭୀର ମୁଦ୍ରାଙ୍କ ଅଙ୍କନ କରିଥିଲା । ପୂର୍ବରୁ କିଛିଦିନ ଶିକ୍ଷକତା କରିବା ସଙ୍ଗେ ସଙ୍ଗେ 'ସମାଜ' ଓ 'ସଂସ୍କାରକ' ନାମକ ଦୁଇଟି ପତ୍ରିକା ସହିତ ନିଜକୁ ସଂଯୁକ୍ତ କରି ବିଶ୍ୱନାଥ, ସମ୍ପାଦନା କାର୍ଯ୍ୟରେ ହାତ ପାକଳ କରିଥିଲେ । କର୍ମି ମଧୁସୂଦନ ରାଓଙ୍କର ବନ୍ଧୁତା ଓ ସାହଚର୍ଯ୍ୟ, ବ୍ରାହ୍ମଧର୍ମ ଗ୍ରହଣ ଆଦି ଘଟଣା ତାଙ୍କ ଜୀବନକୁ ଗଭୀର ଭାବେ ଆଲୋଡ଼ିତ କରିଥିଲା । ତତ୍କାଳୀନ ପରିସ୍ଥିତିରେ ଧର୍ମାନ୍ତରିତ ହେବା ଫଳରେ ଆପଣା ସମାଜ ଓ ଆତ୍ମୀୟସ୍ୱଜନଙ୍କ ସହିତ ସେ ଭୀଷଣ ସଂଘର୍ଷର ସମ୍ମୁଖୀନ ହୋଇଥିଲେ । ସେହିଦିନଠାରୁ ଏକପ୍ରକାର ବିଦ୍ରୋହୀ ଓ ସଂଗ୍ରାମୀ ମନୋବୃତ୍ତି ବରାବର ତାଙ୍କ ଭିତରେ ପ୍ରକାଶ ପାଇଥିଲା । ଯେତେବେଳେ ସାହିତ୍ୟ-ସଂଗଠନ କ୍ଷେତ୍ରରେ ମଧ୍ୟ ବିଶ୍ୱନାଥ ସେହି ମନୋବୃତ୍ତି ପୋଷଣ କରୁଥିଲେ ।

ବିଶ୍ୱନାଥ ଥିଲେ ନବ ନବ ପ୍ରତିଭାର ଆବିଷ୍କାରକ, ପାଠକ ସମାଜର ସତର୍କ ପ୍ରହରୀ ଏବଂ ସାହିତ୍ୟ-ଅଗ୍ରଗତିରେ ନବ ନବ ଦିଗନ୍ତର ଦିଶାରୀ । ତାଙ୍କଠାରେ ଥିଲା—ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା, ଦୂରଦୃଷ୍ଟି ଓ ମାର୍ଜିତ ରୁଚି-ବୋଧ । ଗତ ଶତାବ୍ଦୀର ଅସ୍ତାଚଳରେ ଫକୀରମୋହନ—ମଧୁସୂଦନଙ୍କଠାରୁ ଆରମ୍ଭ କରି ଚଳିତ ଶତାବ୍ଦୀର ପୂର୍ବାହ୍ଣରେ ରାଧାମୋହନ ଗଡ଼ନାୟକ—ସଚ୍ଚି ରାଉତରାୟଙ୍କ ପର୍ଯ୍ୟନ୍ତ ବିଭିନ୍ନ କାଳ ଓ ଗୋଷ୍ଠୀର ବହୁ କବି-ଲେଖକ 'ଉତ୍କଳ ସାହିତ୍ୟ'ରେ ଆତ୍ମପ୍ରକାଶର ସୁଯୋଗ ପାଇଥିଲେ । ବସ୍ତୁତଃ ବିଶ୍ୱନାଥଙ୍କ ଦ୍ୱାରା ସମ୍ପାଦିତ 'ଉତ୍କଳ ସାହିତ୍ୟ' ଯେତେବେଳେ ଥିଲା—ଆମ ସାହିତ୍ୟର ଦିଗବାରେଣୀ ସ୍ତମ୍ଭ—ଆମ ସଂସ୍କୃତିର ସ୍ୱଚ୍ଛ ଦର୍ପଣ ।

'ଉତ୍କଳ ସାହିତ୍ୟ'ର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା ଆରମ୍ଭରେ ବିଶ୍ୱନାଥ ସମ୍ପାଦକୀୟ 'ସୂଚନା'ରେ ପ୍ରକାଶ କରିଥିଲେ—''ଔଦାସୀନ୍ୟ ବା ଜଡ଼ତା ସର୍ବ-ପ୍ରକାର ଉନ୍ନତିର ପ୍ରତିରୋଧକ ଏବଂ ସକଳ ଦୁର୍ଗତିର ନିଦାନ । ଏହାହିଁ ଉତ୍କଳ ସନ୍ତାନମାନଙ୍କର ହସ୍ତପଦ ବନ୍ଧନ କରି ରଖିଅଛି । ଏହାରି ପ୍ରଭାବରୁ ଏମାନେ ଦୁଃଖ-ଦାରିଦ୍ର୍ୟର ହସ୍ତ ଏଡ଼ାଇବାକୁ ଅସମର୍ଥ ହୋଇ ଦୀନହୀନ ଭାବରେ କାଳ ଅତିବାହନ କରୁଅଛନ୍ତି । ସୌଭାଗ୍ୟଲକ୍ଷ୍ମୀ କେବଳ ଉଦ୍ୟୋଗୀ ପୁରୁଷର ସହଚରୀ । ଜଡ଼ତା ରୂପ ପରମ ଶତ୍ରୁର ହସ୍ତରୁ ଉଦ୍ଧାର ନ ପାଇଲେ, ଆମ୍ଭେ-ମାନେ ଚିରଦିନ ମନୁଷ୍ୟର ଆକାଂକ୍ଷଣୀୟ ବହୁ ଉପାଦେୟ ବିଷୟରୁ ବଞ୍ଚିତ ରହିଥିବୁଁ । x x x x x ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରେ ଏ ଦେଶରେ ସକଳ ବିଷୟରେ ଯେପରି ପରିବର୍ତ୍ତନ ଉପସ୍ଥିତ ହୋଇଅଛି, ସାହିତ୍ୟ ସମ୍ବନ୍ଧରେ ମଧ୍ୟ ସେହିପରି ଘଟିଅଛି । ଏ ପରିବର୍ତ୍ତନ ଏକାନ୍ତ ବାଞ୍ଛନୀୟ । ମନୁଷ୍ୟସମାଜ ଏକ ଭାବ, ଏକ ଅବସ୍ଥାରେ ଚିରଦିନ ରହି ନ ପାରେ । ଜୀବନ୍ତ ସମାଜ ପକ୍ଷରେ ଏହା ଅସହନୀୟ । ପ୍ରାଚୀନତାର ଅନୁରୋଧରେ ଉନ୍ନତିର ପଥରୋଧ କରିବା ସୁବୁଦ୍ଧିର କାର୍ଯ୍ୟ ନୁହେଁ । ପକ୍ଷାନ୍ତରରେ ନୂତନର ଅନୁରୋଧରେ ପ୍ରାଚୀନ ପ୍ରତି ଅବଜ୍ଞା ବା ଅନାସ୍ଥା ନିତାନ୍ତ ନିନ୍ଦନୀୟ । ଯେଉଁମାନେ ଉଭୟ କୂଳ ରକ୍ଷା କରି ଚଳି ପାରନ୍ତି, ସେହିମାନେ ବୁଦ୍ଧିମାନ । ସମସ୍ତ ଉନ୍ନତ ଯୁଗର ଏବଂ ଉନ୍ନତ ଦେଶର ସାଧୁ ମହାଜନଗଣ ଏହି ଆଦର୍ଶ ଦେଖାଇ ଯାଇଅଛନ୍ତି । ଆମ୍ଭେମାନେ

ସେତେ ଦିନ ଜୀବିତ ଥିବୁଁ ନିଜର କ୍ଷୁଦ୍ର ସୀମା ମଧ୍ୟରେ ଏହି ନୀତି ଅନୁସରଣ କରି କାର୍ଯ୍ୟ କରିବୁଁ । ଉତ୍କଳର ପ୍ରାଚୀନ ସାହିତ୍ୟ ଭଣ୍ଡାରରେ ଗୌରବର ବିଷୟ ଯଥେଷ୍ଟ ନ ଥିଲେ ହେଁ ତାହାର ଏକାନ୍ତ ଅଭାବ ନାହିଁ । ଅନ୍ୟଆଡ଼େ ନବ ଯୁଗର ସାହିତ୍ୟ ଗଠନର ଚେଷ୍ଟା ମଧ୍ୟ କିଞ୍ଚିତ ପରିମାଣରେ ପରିଲକ୍ଷିତ ହେଉଅଛି । 'ଉତ୍କଳ ସାହିତ୍ୟ' ଏହି ଉଭୟର ପ୍ରତିନିଧି ସ୍ୱରୂପ କାର୍ଯ୍ୟ କରିବାର ଆଶାରେ ଉଦ୍ଗତ ହୋଇଅଛି । ଏକଆଡ଼େ ପ୍ରାଚୀନ ମଧ୍ୟରୁ ଗ୍ରହଣୀୟ ବସ୍ତୁ ଆହରଣ କରିବା, ଅନ୍ୟଆଡ଼େ ଉନ୍ନତ ଯୁଗର ଭାବ ଓ ଚିନ୍ତା ପାଠକ ସାଧାରଣଙ୍କ ନିକଟରେ ଉପସ୍ଥାପିତ କରିବା ଏକାନ୍ତ କର୍ତ୍ତବ୍ୟ । ଆମ୍ଭେମାନେ ବିଜ୍ଞ ଲେଖକମାନଙ୍କ ସାହାଯ୍ୟରେ ଏହି ପବିତ୍ର କର୍ତ୍ତବ୍ୟ ସାଧନ କରିବାର ଆଶା ରଖିଅଛୁଁ ।

ପ୍ରକୃତ ଅର୍ଥରେ ମାନବ ଜୀବନର ଓ ସମାଜର ସମସ୍ତ ବିଷୟ ସାହିତ୍ୟର ଅନ୍ତର୍ଗତ । କାବ୍ୟ, ନାଟକ, ବିଜ୍ଞାନ, ଦର୍ଶନ, ଶିକ୍ଷା, ଶିଳ୍ପ, କୃଷି, ବାଣିଜ୍ୟ, ଧର୍ମ, ନୀତି ସମସ୍ତ ସାହିତ୍ୟର ବହୁଦୂର ବିସ୍ତୃତ ସୀମା ମଧ୍ୟରେ ଅବସ୍ଥାନ କରି ଥାଆନ୍ତି । ଏହି ସ୍ଥଳରେ ଆମ୍ଭେମାନେ କୌଣସିଟିକୁ ଉପେକ୍ଷା କରି ନ ପାରୁ । ଉନ୍ନତି ଯେତେବେଳେ ମାନବ-ଜୀବନର ଲକ୍ଷ୍ୟ, ସେତେବେଳେ ଯଦ୍ଦ୍ୱାରା ସର୍ବାଙ୍ଗୀନ ଉନ୍ନତି ସାଧିତ ହେବ, ତତ୍ପ୍ରତି ସମୁଚିତ ଦୃଷ୍ଟି ରଖିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । ଦେଶ ପ୍ରଚଳିତ ଦୁର୍ନୀତି, କୁସଂସ୍କାର ଓ ଉପଧର୍ମ ବିରୁଦ୍ଧରେ ସଂଗ୍ରାମ ଏବଂ ସୁନୀତି, ସଦାଚାର ଓ ସଦ୍ଧର୍ମର ପ୍ରତିଷ୍ଠା 'ଉତ୍କଳ ସାହିତ୍ୟ'ର ଅନ୍ୟତମ ଉଦ୍ଦେଶ୍ୟ । ଫଳାଫଳ ଗଣନା-ନିରପେକ୍ଷ ହୋଇ ଆମ୍ଭେମାନେ ଏହି ସମସ୍ତ ପବିତ୍ର ଓ ଗୁରୁତର କର୍ତ୍ତବ୍ୟ ସାଧନରେ ଯତ୍ନବାନ୍ ହେବୁଁ । ଆମ୍ଭେମାନେ ବିନୀତ ଚିତ୍ତରେ ସମସ୍ତ ଉତ୍କଳବାସୀଙ୍କର ସାହାଯ୍ୟ ଓ ଆଶୀର୍ବାଦ ଭିକ୍ଷା କରୁଅଛୁଁ । ସିଦ୍ଧିଦାତା ପରମେଶ୍ୱର ଆମ୍ଭମାନଙ୍କର ସହାୟ ହେଉନ୍ତୁ ।"

ଏହି ଉକ୍ତିରୁ ଜାତି ତଥା ଜାତୀୟ ସଂସ୍କୃତି ପ୍ରତି 'ଉତ୍କଳ ସାହିତ୍ୟ' ପତ୍ରିକାର ଅଭିମୁଖ୍ୟ ସ୍ପଷ୍ଟ ପ୍ରତୀୟମାନ ହୁଏ । ପତ୍ରିକାଟିର ଅଭିମୁଖ୍ୟ ସ୍ପଷ୍ଟ ପ୍ରତୀୟମାନ ହୁଏ । ପତ୍ରିକାଟିର ପ୍ରକାଶନ କେବେଠୁଁ ବନ୍ଦ ହୋଇ ଗଲାଣି । ମଝିରେ ଥରେ ଦୁଇଥର ଏହାର ନବପର୍ଯ୍ୟାୟ ପ୍ରକାଶ କରାଯାଇଥିଲା, କିନ୍ତୁ ତାହା ମଧ୍ୟ ଅଳ୍ପ କେତୋଟି ସଂଖ୍ୟା ପ୍ରକାଶ ପରେ ବନ୍ଦ ହୋଇଗଲା । ଯାହାହେଉ, ବିଶ୍ୱନାଥ କର—ସଂପାଦିତ 'ଉତ୍କଳ ସାହିତ୍ୟ' ସାଂପ୍ରତିକ କାଳର ଛାତ୍ରଛାତ୍ରୀ, ଗବେଷକ ତଥା ସଂସ୍କୃତିପ୍ରେମୀ ସୁଧୀମଣ୍ଡଳୀ ନିକଟରେ ଦୁଷ୍ପ୍ରାପ୍ୟ । ତେଣୁ ଆମ୍ଭେମାନେ ଏହି କାର୍ଯ୍ୟରେ ଅଗ୍ରସର ହୋଇଛୁ—'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ବିଭିନ୍ନ ଲେଖକଙ୍କର ମେଧା ଓ ମନୀଷା ସହିତ ଏ କାଳର ପାଠକସମାଜର ସଂପର୍କ ସ୍ଥାପନ ପାଇଁ, ତଥା ସେକାଳର ଭାବସଂପଦ ସହିତ ସାଂପ୍ରତିକ ସୁଧୀ ସଜ୍ଜନମାନଙ୍କର ଘନିଷ୍ଠ ପରିଚୟ ପାଇଁ ଏହି ଗ୍ରନ୍ଥମାଳା ପ୍ରକାଶ କରିଛୁ । 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଥିବା ରଚନାବଳୀକୁ ବିଷୟ ବସ୍ତୁ ଅନୁଯାୟୀ ବିଭିନ୍ନ ଖଣ୍ଡରେ ବିଭକ୍ତ କରି, ପ୍ରତ୍ୟେକ ଖଣ୍ଡକୁ ସ୍ୱତନ୍ତ୍ର ଗ୍ରନ୍ଥାକାରରେ ଉପସ୍ଥାପନ କରିଛୁ । [illegible] ସହୃଦୟ ପାଠକସମାଜ ନିକଟରେ ଏହା ସାଦର ଗୃହୀତ ହେବ ବୋଲି ଆଶା କରୁଁ ।

# ଅମ୍ବାଳିକା

## ( ଐତିହାସିକ ଗଳ୍ପ )

—୧—

## ସ୍ୱପ୍ନ

ଦିନେ ଦିଲ୍ଲୀଶ୍ୱର ଅକବର ସାହ ସ୍ୱୀୟ ଅମାତ୍ୟବର୍ଗଙ୍କୁ ସମ୍ବୋଧନ କରି ଆପଣାର ସିଂହାସନ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ତୀବ୍ର ସ୍ୱରରେ କହିଥିଲେ —"ଯେଉଁଦିନ ମୁସଲମାନ ସମ୍ରାଟ ଭାରତ ଶାସନରେ ହିନ୍ଦୁ ମୁସଲମାନ ପ୍ରଭେଦ ଜ୍ଞାନ କରିବେ, ସେହିଦିନ ଏ ରତ୍ନ ସିଂହାସନ ଶତଧା ଚୂର୍ଣ୍ଣ ହେବ— ଏଥିରେ ସନ୍ଦେହ ନାହିଁ।" ରାଜକୁଳ ଚୂଡ଼ାମଣି ଅକବରଙ୍କର ସେ ଭବିଷ୍ୟଦ୍‌ବାଣୀ ଏତେଦିନେ ପୂର୍ଣ୍ଣ ହୋଇଅଛି। ହିନ୍ଦୁଦ୍ୱେଷୀ, ଅନୁଦାର, ନିଷ୍ଠୁର ଆଓରଙ୍ଗଜେବ୍ ଭାରତ ସିଂହାସନାଧିରୂଢ଼। ସମଗ୍ର ଆର୍ଯ୍ୟାବର୍ତ୍ତ ପଦାଘାତ ପ୍ରପୀଡ଼ିତ ହିନ୍ଦୁର ହାହାକାରରେ ଓ ଯବନର ଅଟ୍ଟହାସ୍ୟରେ ପ୍ରତିଧ୍ୱନିତ ଆଓରଙ୍ଗଜେବ୍‌ଙ୍କ ଲୋମହର୍ଷଣ ଅତ୍ୟାଚାରରେ ଆର୍ଯ୍ୟଜାତି ହିନ୍ଦୁ ସମାଜ ବିସ୍ମିତ ଓ ଭୀତ। ତ୍ରିଂଶ କୋଟି ହିନ୍ଦୁ ଆଜି ଧର୍ମଲୋପ ଓ ପାପ ସ୍ପର୍ଶ ଭୟରେ ନୀରବ ଓ ମ୍ରିୟମାଣ। ପୁଣ୍ୟତୋୟା ଯମୁନାତୀର ଆଜି ବେଦ ଧ୍ୱନିରେ ମୁଖରିତ ନୁହେଁ, ଜାହ୍ନବୀ ତରଙ୍ଗ ଆଜି ଶଂଖ ଘଣ୍ଟା ନାଦରେ ପ୍ରତିଧ୍ୱନିତ ନୁହେଁ, ଦେବ ମନ୍ଦିରରୁ ଆଜି କର୍ପୂରବର୍ତ୍ତିର ସୁଗନ୍ଧ ନିର୍ଗତ ହେଉନାହିଁ। ଜ୍ୟୋତିର୍ମୟୀ, ପବିତ୍ରତାମୟୀ, ଆର୍ଯ୍ୟ ଲଳନା ସୀତା, ସାବିତ୍ରୀ, ଦମୟନ୍ତୀ ପ୍ରଭୃତିଙ୍କ ଜୀବନ୍ତ ମୂର୍ତ୍ତି ଆଜି ଯବନ ଭୟରେ ଅନ୍ତପୁରରେ ଆଜି ଲୁକ୍‌କାୟିତ। ଯବନ କର୍ମଚାରୀମାନଙ୍କର ଧାରଣା "ଇନ୍ଦ୍ରିୟ ପରିତୃପ୍ତି ଲାଗି ନାରୀ ଜାତିର ସୃଷ୍ଟି।"

ଆଓରଙ୍ଗଜେବ ଲୋଭସାର ଦୁର୍ଦ୍ଦମନୀୟ ମୋହରେ ମୁଗ୍ଧ ହୋଇ ମନେ କରିଥିଲେ, ନିସ୍ତବ୍ଧ ମ୍ରିୟମାଣ ଆର୍ଯ୍ୟାବର୍ତ୍ତରୁ ହିନ୍ଦୁର ନାମ ସୁଦ୍ଧା ଲୁପ୍ତ ହୋଇଯିବ। ଭ୍ରାନ୍ତ ମୋଗଲ ସମ୍ରାଟ ଜାଣିନଥିଲେ, ସଂହାର ମୂର୍ତ୍ତି ଧାରଣ କରିବା ପୂର୍ବରୁ ପ୍ରକୃତି ଏତାଦୃଶ ନିସ୍ତବ୍ଧ ମୂର୍ତ୍ତି ପରିଗ୍ରହ କରିଥାଏ। ଅଳ୍ପକାଳ ଉତ୍ତାରୁ ସମ୍ରାଟ ସ୍ତମ୍ଭିତ ହୃଦୟରେ ଶୁଣିଲେ, ଅସଂଖ୍ୟ ମୁମୂର୍ଷୁ ଆର୍ଯ୍ୟ ସନ୍ତାନ ସହସା ଚେତନା ଲାଭକରି ଭୀଷଣ ବାତ୍ୟାସଂକ୍ଷୁବ୍ଧ ସାଗରତରଙ୍ଗ ତୁଲ୍ୟ ଭୀମ ଗର୍ଜ୍ଜନରେ ସର୍ବ ଦିଗ କଂପମାନ କରିବାକୁ ଲାଗିଲେ। ଭୀତ ଓ ବିସ୍ମିତ ହୋଇ ସମ୍ରାଟ ଦେଖିଲେ, ଆରବଳୀ ଉପତ୍ୟକାର ଲୁଣୀନଦୀ ତୀରରେ ଅସଂଖ୍ୟ ହିନ୍ଦୁ ବୀରଙ୍କର ଉନ୍ମୁକ୍ତ ଅସିରେ ଅସଂଖ୍ୟ ରାଜ ମୁକୁଟର ହୀରକପ୍ରଭା ପ୍ରତିଫଳିତ। ଆଓରଙ୍ଗଜେବଙ୍କର ଭ୍ରାନ୍ତି—ସ୍ୱପ୍ନ ଭାଙ୍ଗିଗଲା। ସେ ବୁଝିଲେ, ଦୀପଶିଖା ଦ୍ୱାରା ସମୁଦ୍ର ଶୋଷଣ ବା ଫୁତ୍କାର ଦ୍ୱାରା ତପନ ତେଜ ନିବାରଣ ମନୁଷ୍ୟ ପକ୍ଷରେ ଏକାବେଳକେ ଅସମ୍ଭବ।

ସୂର୍ଯ୍ୟଦେବ ଅସ୍ତମିତ ; ସଂଧ୍ୟା ସୁନ୍ଦରୀ ଧୀରେ ଧୀରେ କୃଷ୍ଣ ବସନରେ ଧରଣୀ ରାଣୀଙ୍କୁ ମଣ୍ଡାଉ ଅଛି । ଏପରି ସମୟରେ ଆଜମିର ଦୁର୍ଗର ସମୀପବର୍ତ୍ତୀ କାଳନ୍ଦୀ ନଦୀ ତଟରେ ଜନୈକ ଯୁବକ ଶାୟିତ ହୋଇ ଚିନ୍ତା କରୁଅଛନ୍ତି—ଅଠବର୍ଷ ଅତୀତ ହେଲା ; ଶୈଶବ କାଳରେ ସେ ଉ ସମୁଦ୍ର ତଟରେ କିଂଶୁକ ତରୁତଳରେ ଯେଉଁ ଲାବଣ୍ୟ ପିତୁଳାଟିକୁ ଦେଖିଥିଲି ସେ ଥରେ ଦେଖା ଦେଇ କେଉଁଆଡ଼େ ଲୁଚିଗଲା ? ସେହିଦିନୁ ତାର ଅନ୍ୱେଷଣରେ ଗିରିବନ ଉପତ୍ୟକା ବୁଲିଲି, ଆଉ ଥରେ ମାତ୍ର ସେ ଅମୂଲ୍ୟ ନିଧି, ସେ ପୂର୍ଣ୍ଣିମା ରଜନୀର ସୁଧାଂଶୁରେଖାର ସାକ୍ଷାତ୍ ପାଇଲି ନାହିଁ । ଯୁବକ ସହସା ନିଦ୍ରାଭିଭୂତ ହେଲେ । ସ୍ୱପ୍ନାବସ୍ଥାରେ ଯୁବକ ଦେଖୁଅଛନ୍ତି—ଯେପରି ସେ ତାଙ୍କର ସେହି ଦେବ ଦୁର୍ଲଭ କମନୀୟ ମୂର୍ତ୍ତିର ଅନ୍ୱେଷଣ ଲାଗି ଗୋଟିଏ ଉଚ୍ଚ ପର୍ବତ ଶିଖରରେ ଆରୋହଣ କରିଅଛନ୍ତି । ଯୁବକ ଉଚ୍ଚସ୍ୱରରେ କହିଲେ "ଆଉ କି ଏ ଜନ୍ମରେ ସାକ୍ଷାତ ହେବନାହିଁ ।" ସହସା ତାଙ୍କ ସମ୍ମୁଖରେ ଜଣେ ଲାବଣ୍ୟମୟୀ ଆଲୁଳାୟିତ କେଶା ରମଣୀ ଦଣ୍ଡାୟମାନ ହୋଇ କହିଲା —"ହେଇ ଦେଖ, ସମ୍ମୁଖରେ ଅଗଣିତ ସୌଧମାଳା ଶୋଭିତ ବିପୁଳ ବିସ୍ତୀର୍ଣ୍ଣ ରାଜଧାନୀ । ତାହାର ମଧ୍ୟ ଦେଶରେ ମଣିମାଣିକ୍ୟ ଖଚିତ ସଭା ମଣ୍ଡପରେ ଅସଂଖ୍ୟ ଭୀଷଣ ଦାନବଦଳ ଉପବିଷ୍ଟ । ଉର୍ଦ୍ଧ୍ୱରେ ନିଳଗଗନ ଉପରି ହୀରକ ଖଚିତ ସୁବର୍ଣ୍ଣ ମଣ୍ଡିତ ସିଂହାସନ ।" ନିଷ୍ପନ୍ଦ ନୟନ, ବିସ୍ମିତ ହୃଦୟ ରୋମାଞ୍ଚିତ—କଳେବର ଯୁବକ ଦେଖିଲେ, ସେହି ପାରିଜାତ କୁସୁମ ବିମଣ୍ଡିତ ସିଂହାସନୋପରି ସେହି ଲାବଣ୍ୟ ମୂର୍ତ୍ତି ଉପବେଶନ କରିଅଛି । ଯୁବକ ହଠାତ୍ ଚିହ୍ନିଲେ—ଏ ତ ସେହି ଅମୂଲ୍ୟନିଧି ।" ସମ୍ମୁଖବର୍ତ୍ତିନୀ ରମଣୀ କହିଲା—"ଯୁବକ, ଏହି ସିଂହାସନ ନିକଟରେ ପହଞ୍ଚିବାକୁ ଭୀଷଣ ସାହସ, ଗଭୀର ସାଧନା ଆବଶ୍ୟକ । ସମ୍ମୁଖସ୍ଥ ଭୀମପରାକ୍ରମଶାଳୀ ଦାନବ-ଦଳକୁ ପରାଭୂତ କରି ଅଗ୍ରସିତ ରକ୍ତ ନଦୀ ସନ୍ତରଣ କଲେ ସେଠାରେ ପ୍ରବିଷ୍ଟ ହୋଇପାରିବ । ଯୁବକ ! ହୃଦୟରେ ସାହସ, ବାହୁରେ ବଳ ଅଛି ତ ? ଯୁବକ କହିଲେ, "ଦେବୀ ! ଆଶୀର୍ବାଦ କର, ଅବଶ୍ୟ ପାରିବି ।" ରମଣୀ ଉତ୍ତର ଦେଲେ, ତେବେ ଉଠ, ଆଉ ନିଦ୍ରା ଯିବାର ଅବସର ନାହିଁ ।"

ସହସା ଯୁବକର ସୁଖ ସ୍ୱପ୍ନ ଭାଙ୍ଗିଗଲା, ସେ ନେତ୍ରୋନ୍ମୀଳନ କରି ଦେଖିଲେ, ଏକ ପାଖରେ କାଳନ୍ଦୀ ନଦୀ କଳକଳ ନାଦରେ ପ୍ରବାହିତା, ଚତୁର୍ଦ୍ଦିଗ ନିସ୍ତବ୍ଧ, ଜନଶୂନ୍ୟ, କାହିଁ ସେ ପର୍ବତ ଶୃଙ୍ଗ, କାହିଁ ସେ ଦାନବ—ରାଜଧାନୀ, କାହିଁ ସେ ରକ୍ତଗିରି ? କାହିଁ ଅବା ସେହି ଅପ୍ସରା ମଧ୍ୟବର୍ତ୍ତିନୀ, ଗୌରବମୟୀ, ଆଲୋକମୟୀ ମୂର୍ତ୍ତି ? ଯୁବକ ପଶ୍ଚାତ୍ ଦିଗକୁ ନିରୀକ୍ଷଣ କରି ଦେଖିଲେ, ସେହି ଆଲୁଳାୟିତ କେଶା ସୁରସୁନ୍ଦରୀ ଦଣ୍ଡାୟମାନା । ଯୁବକ ଜାଗ୍ରତ କି ନିଦ୍ରିତ ସ୍ଥିର କରିପାରିଲେ ନାହିଁ । ପୁଣି ଚତୁର୍ଦ୍ଦିଗ ନିରୀକ୍ଷଣ କରି ଦେଖିଲେ—ଆକାଶରେ ନକ୍ଷତ୍ର ପୁଞ୍ଜ ଉଦିତ, ଶଶାଙ୍କ ତାଙ୍କ ମଧ୍ୟରେ ରାଜତ୍ୱ କରୁଅଛି ; ନିମ୍ନରେ ନୀଳବସନା ଚଞ୍ଚଳାପ୍ରାଣା ତରଙ୍ଗିଣୀ ପ୍ରବାହିତା । ତେବେ ଏହା ସ୍ୱପ୍ନ ନୁହେଁ—ସତ୍ୟ ।

ରମଣୀ ତୀବ୍ର କଣ୍ଠରେ କହିଲେ—"ଯୁବକ ! ନିଦ୍ରା ତ୍ୟାଗ କର, ମୋ ସାଙ୍ଗରେ ଆଗମନ କର ।" ଯୁବକ ମନ୍ତ୍ରମୁଗ୍ଧ ଭୁଜଙ୍ଗ ପ୍ରାୟ ରମଣୀର ଅନୁସରଣ କଲେ । ରମଣୀ ଦ୍ରୁତ ପଦ ବିକ୍ଷେପରେ କାୟଦର ଅତିକ୍ରମ କରି ଗୋଟିଏ ଜୀର୍ଣ୍ଣ ମନ୍ଦିର ସମ୍ମୁଖରେ ଯୁବକକୁ ବିଶ୍ରାମ କରିବାକୁ କହି

ମନ୍ଦିର ମଧ୍ୟରେ ପ୍ରବେଶ କଲେ । ଅଳ୍ପକ୍ଷଣ ଉତ୍ତାରୁ ରମଣୀ ଜନୈକ ବୃଦ୍ଧ ମୁସଲମାନ ଫକୀର ସହିତ ଯୁବକନିକଟରେ ଉପସ୍ଥିତ ହେଲେ । ଫକୀରଙ୍କର ଖଣ୍ଡିଏ ମାତ୍ର କୌପୀନ ପରିଧାନ ; ହସ୍ତରେ ଭୀଷଣ କୃପାଣ ଚନ୍ଦ୍ରାଲୋକରେ ଚକମକ ହେଉଅଛି । ତାଙ୍କର ଶ୍ୱେତଶ୍ମଶ୍ରୁ ଶୋଭିତ ଜ୍ୟୋତିର୍ମୟ ମୁଖମଣ୍ଡଳ, ଜଟାଜୁଟ ଦ୍ୱାରା ଅର୍ଦ୍ଧାବୃତ ବିଭୂତି ଚର୍ଚ୍ଚିତ ସୁଦୀର୍ଘ ବୀରବପୁ ଅବଲୋକନ କରି ଯୁବକଙ୍କ ଶରୀର ରୋମାଞ୍ଚିତ ହେଲା । ଅନ୍ତର ଭକ୍ତିରସପରିପ୍ଳୁତ ହେଲା । ଫକୀର ପ୍ରୀତି ବିସ୍ଫାରିତ ଲୋଚନରେ ଯୁବକ ଆଡ଼କୁ ଅନାଇ ରମଣୀଙ୍କୁ ସମ୍ବୋଧନ କରି କହିଲେ—"ବତ୍ସ ! ତୁମ୍ଭେ ଏହି ମନ୍ଦିରରେ ଥାଅ, ମୁଁ ଏହି ବୀର ଯୁବାକୁ ଯବନ ସଂଗ୍ରାମକୁ ସଙ୍ଗରେ ନେଇ ଯାଉଛି ।"

—୨—

## ପ୍ରଥମ ସମର

ଦିନ ରତରତ ହେଉଛି । ମାଛି 'ଅନ୍ଧାର ହେଲାଣି । ଦେହର ଝାଳ ଲୁଚି ଯାଉଛି । ଏମନ୍ତ ସମୟରେ କାଳନ୍ଦୀ ନଦୀ ବକ୍ଷରେ ମୃଦୁମନ୍ଦ ସମୀରଣ ଧୀରେ ଧୀରେ ଖେଳି ଯାଉଛି । ଦୁଇ ଜଣ ହିନ୍ଦୁ ସନ୍ତାନ କାଳନ୍ଦୀ ନଦୀ ତୀରରେ ସନ୍ଧ୍ୟାବିଧି ସମାପନ କରି ଗମ୍ଭୀର ସ୍ୱରରେ 'ବମ୍ ବମ୍ ହର ହର' ଇତ୍ୟାଦି ଶିବସ୍ତୋତ୍ର ପାଠ କରୁଅଛନ୍ତି । କାଳନ୍ଦୀ ଯେପରି ସେ ସ୍ତବ ପାଠ ଶୁଣି ତାଳେ ତାଳେ ନାଚି ଆନନ୍ଦରେ ସେ ଗୀତିର ଅନୁକରଣ କରୁଅଛି । ସହସା ଦୂରରେ କୋଳାହଳ ଶୁଭିଲା । ଭକ୍ତମାନଙ୍କର ଧ୍ୟାନଭଙ୍ଗ ହେଲା—ଦେଖିଲେ ଅସଂଖ୍ୟ ମୁସଲମାନ ସେନା ସେମାନଙ୍କ ଆଡ଼କୁ ଅଗ୍ରସର ହେଉଅଛନ୍ତି । ସେମାନଙ୍କ ସଙ୍ଗରେ ବନ୍ଦୀ ଭାବରେ ବହୁ ସଂଖ୍ୟକ ନରନାରୀ ବାଳକ ବାଳିକା । ଏ ମୋଗଲ ସେନା ହରଦେବପୁର ଗ୍ରାମ ଲୁଣ୍ଠନ କରି ଫେରି ଆସୁଅଛନ୍ତି । ଏତେଗୁଡ଼ିଏ ନରନାରୀ ବାଳକ ବାଳିକାଙ୍କୁ ବନ୍ଦୀ କରି ଆଣିବାର ଉଦ୍ଦେଶ୍ୟ—ଇସ୍‌ଲାମ ଧର୍ମରେ ଏମାନଙ୍କୁ ଦୀକ୍ଷିତ କରିବାକୁ ହେବ ।

ପୂର୍ବକଥିତ ହିନ୍ଦୁ ସନ୍ତାନ ଦ୍ୱୟଙ୍କ ମଧ୍ୟରୁ ଜଣେ ହଠାତ୍ ବନ୍ଦୀଗଣଙ୍କ ରକ୍ଷକ ପୀରବକ୍ସର ବକ୍ଷ ସ୍ଥଳରେ ପଦାଘାତ—କରନ୍ତେ, ସେ ଅଚେତନ ହୋଇ ଭୂତଳରେ ପତିତ ହେଲେ । ଏହି ସୁଯୋଗରେ ଅନ୍ୟ ଜଣଙ୍କ ବନ୍ଦୀମାନଙ୍କର ବନ୍ଧନ ରଜ୍ଜୁ ଉନ୍ମୋଚନ କରିଦେଲେ । ମୁସଲମାନ ସୈନ୍ୟମାନେ ଧାବିତ ହୋଇ ଅପରିଚିତ ବ୍ୟକ୍ତିଦ୍ୱୟଙ୍କୁ ଆକ୍ରମଣ କଲେ । ଦୂରରୁ ସେନାପତି ଆଫ୍‌ଜଲ୍ ଖାଁ ହୁକୁମ୍ ଦେଲେ— "ସେ ଦୁହିଁଙ୍କୁ ବାନ୍ଧି ନେଇଆସ ।" କିନ୍ତୁ ଏ ଘୋର ପରୀକ୍ଷାର ସ୍ଥଳ, କିଏ କାହାକୁ ବାନ୍ଧୁଛି ? ଆଗନ୍ତୁକ ଦ୍ୱୟ ସମ୍ମୁଖବର୍ତ୍ତୀ ଆମ୍ରବୃକ୍ଷର ଶାଖା ଭଗ୍ନ କରି, ରୁଦ୍ର ନାମ ଗାନ କରୁ କରୁ, ରୁଦ୍ର ବଳରେ ଶାଖା ପ୍ରହାର ଦ୍ୱାରା ବହୁ ସଂଖ୍ୟକ ଯବନ ସେନାଙ୍କୁ ଭୂତଳଶାୟୀ କଲେ । ବନ୍ଦୀଗଣ ବନ୍ଧନ ମୁକ୍ତ ହୋଇ ସେହି ରୁଦ୍ର ଗମ୍ଭୀର ଲୋମହର୍ଷଣ ହରହର ଶବ୍ଦ ଗାଉଁ ଗାଉଁ ଶତ୍ରୁ ସୈନ୍ୟ ନିପାତ କରିବାକୁ ଲାଗିଲେ । ରଣ କୋଳାହଳ ଭେଦକରି,

ଅସିର ଝଣଝଣ ଶବ୍ଦ, ଆହତ ଯୋଦ୍ଧାର ଆର୍ତ୍ତନାଦ, ଆତତାୟୀ ବୀରର ହୁଙ୍କାର ବିଲୀନ କରି ଶୁଭୁଛି ଏକମାତ୍ର ଶବ୍ଦ—'ହରହର—ବମ୍ ବମ୍—ହରହର ।'' ରଣାଙ୍ଗନର ଏକ ପାର୍ଶ୍ୱରୁ ଆଉ ଜଣେ ବ୍ୟକ୍ତିର କଣ୍ଠସ୍ୱର ଶୁଣାଗଲା, ରଙ୍ଗଭୂମିର ଅଦୂରରୁ 'ବମ୍ ବମ୍ ହରହର' ଉଚ୍ଚ ଗମ୍ଭୀର ଧ୍ୱନି କରି ଅସ୍ମାନଙ୍କର ପୂର୍ବ ପରିଚିତ ଯୁବକ ପ୍ରଳୟକାଳ ଦାନ୍ତବର୍ତ୍ତିନୀ ସୌଦାମିନୀ ତୁଲ୍ୟ ଅସିହସ୍ତ ହୋଇ ଆଗନ୍ତୁକ ଆର୍ଯ୍ୟବୀର ଦ୍ୱୟଙ୍କ ସଙ୍ଗେ ଯୋଗଦେଲେ । ଠିକ୍ ସେହି ସମୟରେ ଅସ୍ମାନଙ୍କର ପୂର୍ବ ପରିଚିତ ଶ୍ୱେତଶ୍ମଶ୍ରୁ, ଦୀର୍ଘକାୟ, କୌପୀନଧାରୀ ମୁସଲମାନ ଫକୀର ହସ୍ତରେ ଘୂର୍ଣ୍ଣୟମାନ ଭୀମ କୃପାଣ ଘେନି ଜଳଧି ଗର୍ଜ୍ଜନ ତୁଲ୍ୟ 'ଆଲ୍ଲା ହୋ ଆକବର' ଧ୍ୱନି କରି ରଙ୍ଗଭୂମିରେ ଉପସ୍ଥିତ ହେଲେ ଏବଂ ହିନ୍ଦୁ ବୀରମାନଙ୍କ ସଙ୍ଗେ ମୋଗଲ ସୈନ୍ୟ ବିନାଶରେ ଯୋଗଦେଲେ ।

X X X X

ସେ ବିଷମ ଯୁଦ୍ଧର ଅବସାନ ହେଲା, କାଳନ୍ଦୀ ତୀରବର୍ତ୍ତୀ ସିକତ ଭୂମି ରକ୍ତ ବିଧୌତ ହୋଇଅଛି । କେତେ ମୃତ ଦେହ ଖଣ୍ଡବିଖଣ୍ଡ ହୋଇ ପତିତ ହୋଇଅଛି, କାହାରି ମୁମୂର୍ଷୁ କଣ୍ଠର କ୍ଷୀଣ ଆର୍ତ୍ତନାଦ ଶୁଭୁଅଛି, କାହାରିବା ପିଣ୍ଡରେ ଜୀବନବାୟୁ ରହିଥିବାରୁ ତାହାର ଦେହ ଭୂମିରେ ଲୋଟି ଯାଉଅଛି । ହିନ୍ଦୁ ଯୋଦ୍ଧାଗଣ ଓ ଫକୀର ଯୁଦ୍ଧକ୍ଷେତ୍ରରୁ ପ୍ରସ୍ଥାନ କରିଅଛନ୍ତି । ଏ ଭୀଷଣ ଦୃଶ୍ୟର ଅନତି ଦୂରରେ ଗୁଟିଜଣ ମୋଗଲ ସୈନିକ ନିଜର ରକ୍ତାକ୍ତ କଳେବର କାଳନ୍ଦୀ ଜଳରେ ମାର୍ଜ୍ଜନ କରୁଅଛନ୍ତି; ବର୍ତ୍ତମାନ ସେମାନଙ୍କ ମଧ୍ୟରେ ଆଲୋଚନା ହେଉଅଛି—'ସେ ତିନିଜଣ ତ କାଫେର; ସେ ଫକୀରଟା କିଏ ?' ଶେଷରେ ମୀମାଂସା ହେଲା, ସେ ଗୋଟାଏ ଭୂତ, ଅବଶ୍ୟ ମୁସଲମାନ ଭୂତ ନୁହେଁ, ଭୂତମାନେ ନାନା ପ୍ରକାର ଆକାର ଧାରଣ କରିପାରନ୍ତି; ଏ ହିନ୍ଦୁ ଭୂତ—ମୁସଲମାନ ଆକାରରେ ଏତେ ଦୌରାତ୍ମ୍ୟ କରିଗଲା । ଭୂତ ନହେଲେ ତିନିଟା କାଫେର ଏତେଗୁଡାଏ ମୁସଲମାନଙ୍କୁ ମାରିପାରନ୍ତେ । ଅସମ୍ଭବ, ଅସମ୍ଭବ ।

ଯାହାହେଉ ସେନାପତି ଆଫଜଲ ଖାଁ ସହସା ଅଶ୍ୱାରୋହଣ କରି ସେଠାରେ ଉପସ୍ଥିତ ହେଲେ । ଆଫଜଲ ମଧ୍ୟ ସୈନିକମାନଙ୍କର କଥୋପକଥନ ଓ ଶେଷ ମୀମାଂସାର ସାରାଂଶଟା ଶୁଣିନେଲେ । ସେନାପତି ତାଙ୍କର ତ ଗୋଟାଏ ମନ୍ତବ୍ୟ ଅଛି—ସେନାପତି କିଛିକ୍ଷଣ ଚିନ୍ତା କରି କହିଲେ, ''ତୁମ୍ଭେମାନେ କ'ଣ ମନେକରୁଛ, ଆମ୍ଭେମାନେ ଭୂତ ସଙ୍ଗରେ ଯୁଦ୍ଧ କରୁଥିଲୁଁ ?'' ନାଁ ଭୂତ ହେଲେ ସମସ୍ତଙ୍କୁ ନମାରି ତୁମ୍ଭମାନଙ୍କୁ ଛାଡ଼ିଦିଅନ୍ତା କାହିଁକି ?''

ଆଫଜଲ ଖାଁ ବର୍ତ୍ତମାନ ସ୍ପଷ୍ଟ ବୁଝିପାରିଲେ ଯେ ଅମୂଳକ ଆଶଙ୍କାରେ ଭୀତ ହୋଇ ମୁସଲମାନ ସେନାମାନେ ନିହତ ହେଲେ । ସେନାପତି ହତାବଶେଷ ସୈନ୍ୟମାନଙ୍କୁ ସମ୍ବୋଧନ କରି କହିଲେ, ''ଆଜି ଆମ୍ଭେମାନେ ଜାଣୁ ଜାଣୁ ହାତରୁ ଶିକାର ଖସିଗଲା । କିନ୍ତୁ ଏକଥା କାହାରି ଆଗରେ ସେପରି ପ୍ରକାଶ ନ ହୁଏ । ଯଦି କେହି ପଚାରେ—'ବହୁ ସଂଖ୍ୟକ ହିନ୍ଦୁ ସୈନ୍ୟ ତରବାରୀ ଘେନି ହଠାତ୍ ପଚିଶ ହଜାର ମୁସଲମାନଙ୍କୁ ଆକ୍ରମଣ କଲେ, ସେଥିରେ କେତେଜଣ ମୁସଲମାନଙ୍କର ମୃତ୍ୟୁ ହୋଇଛି, ମାତ୍ର ହିନ୍ଦୁ ସୈନ୍ୟ ଯେ କେତେ ମରିଛନ୍ତି ତାର କଳନା ନାହିଁ ।' କିନ୍ତୁ ସେ ହିନ୍ଦୁ ତିନିଜଣ ଓ

ଫକୀରକୁ ଉପଯୁକ୍ତ ଶାସ୍ତି ନଦେଲେ ଶାନ୍ତି ନାହିଁ । ଏହି ନଦୀର ଅଳ୍ପ ଦୂରରେ ଗୋଟିଏ ପୁରାତନ ମସଜିଦ୍ ଅଛି; ସେ ଫକୀର ସେହିଠାରେ ଥାଏ, ହିନ୍ଦୁ ତିନିଜଣ ମଧ୍ୟ ତାହା ସଙ୍ଗେ ସଙ୍ଗେ ଯାଇଅଛନ୍ତି, ତୁମ୍ଭେମାନେ ନଜର ରଖିଥାଅ ? ତଦନନ୍ତର ସେନାପତି ଦିଲ୍ଲୀ ଅଭିମୁଖେ ଯାତ୍ରାକଲେ ।

× × × ×

—୩—

## ଜାଗ୍ରତ ସ୍ୱପ୍ନ

ରଣକ୍ଷେତ୍ରରେ ଅର୍ଦ୍ଧକ୍ରୋଶ ଦୂରରେ ନଦୀ ପାର୍ଶ୍ୱରେ ଗୋଟିଏ ପୁରାତନ ମସଜିଦ୍ ଥିଲା । ଯୁଦ୍ଧ ଶେଷ ହେବାର କାୟତ କ୍ଷଣପରେ ଆମ୍ଭମାନଙ୍କ ପୂର୍ବ ପରିଚିତ ଯୁବକ ଓ ହିନ୍ଦୁବୀର ତ୍ରୟ ଏବଂ ଫକୀର ମସଜିଦ୍ ସମ୍ମୁଖରେ ଉପସ୍ଥିତ ହେଲେ । ଫକୀର କହିଲେ—'ବତ୍ସ, ଏହି ମୋର ମନ୍ଦିର, ଏହିଠାରେ ଶ୍ରାନ୍ତି ଦୂରକର ।'' ଯୁବକ କହିଲେ—' ମନ୍ଦିର ନା ମସଜିଦ୍ ? ଫକୀର ସହାସ୍ୟ ବଦନରେ ଉତ୍ତର ଦେଲେ—''ପବିତ୍ର ଇସ୍‌ଲାମ ଧର୍ମରେ ମନ୍ଦିର ଓ ମସ୍‌ଜିଦ୍, ହିନ୍ଦୁ ଓ ମୁସଲମାନ, ଅଲ୍ଲା ଓ ଭଗବାନ, କୋରାନ୍ ଓ ଉପନିଷଦ ସମାନ । ଫକୀର ପୁନର୍ବାର କହିଲେ— ''ମୋ ବିବେଚନାରେ ଆପଣମାନଙ୍କର ଏଠାରେ କାଳବିଳମ୍ବ ଉଚିତ୍ ନୁହେଁ । ଆଫଜଲ୍ ଖାଁ ଅଚିର ବୃତ୍ତାନ୍ତ ଶୀଘ୍ର ବାଦ୍‌ସାହଙ୍କ କର୍ଣ୍ଣଗୋଚର କରାଇ ପ୍ରତିଶୋଧର ଚେଷ୍ଟା କରିବ । ଆପଣମାନେ ଶୀଘ୍ର ଅଭୀଷ୍ଟ ସ୍ଥାନରେ ଉପସ୍ଥିତ ହେବାକୁ ଚେଷ୍ଟା କରନ୍ତୁ ।''

ହିନ୍ଦୁବୀର ତ୍ରୟଙ୍କ ମଧ୍ୟରୁ ଜଣେ ଆମ୍ଭମାନଙ୍କ ପୂର୍ବ ପରିଚିତ ଯୁବକଙ୍କୁ ପ୍ରଶ୍ନ କଲେ, ''ବୀର ବାଳକ, ତୁମ୍ଭେ କ'ଣ ଆମ୍ଭମାନଙ୍କ ସଙ୍ଗେ ଯିବାକୁ ପ୍ରସ୍ତୁତ ଅଛ ?'' ଯୁବା ଉତ୍ତର କଲେ—''ବାଲ୍ୟକାଳରୁ ମୁଁ ଗୋଟିଏ ଅମୂଲ୍ୟ ରତ୍ନ ହରାଇଅଛି; ଶୁଣିଛି, ରଣସମୁଦ୍ର ତଳେ ସେ ରତ୍ନ ଲୁଚି ରହିଅଛି । ଶୁଣିଲି, ରାଠୋର ସେନାପତି ଦୁର୍ଗାଦାସ ଆରବଲୀଗିରି ଉପତ୍ୟକାରୁ ଅମୃତ-ମୟୀ ଭେରୀ ଧ୍ୱନିରେ ଆର୍ଯ୍ୟାବର୍ତ୍ତ ବୀରଗଣଙ୍କୁ ଆହ୍ୱାନ କରୁଅଛନ୍ତି । ମୁଁ ତାଙ୍କ ଆହ୍ୱାନ ଶୁଣି ତାଙ୍କ ଅନ୍ୱେଷଣରେ ଯାଉଅଛି ।'' ବୃଦ୍ଧ ଫକୀର ଜନୈକ ହିନ୍ଦୁ ବୀରଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, ''ବାଳକ, ତୁମ୍ଭେ ଯାହାଙ୍କୁ ଅନ୍ୱେଷଣ କରୁଅଛ, ଏହି ଶ୍ୱେତ ଚନ୍ଦନ ଶୋଭିତ ଉନ୍ନତ ଲଲାଟ, ତେଜ-ଗର୍ବଶୀଳ—ଉଜ୍ଜ୍ୱଳ ନୟନ, ଆଜାନୁଲମ୍ବିତ ମହାଭୁଜ ବୀର ଦୁର୍ଗାଦାସ ।'' ଦୁର୍ଗାଦାସ ବାଳକକୁ ସାଦର ଆଲିଙ୍ଗନ କରି ରାଜମହିଷୀଙ୍କ ନିକଟରେ ତାଙ୍କୁ ପରିଚିତ କରାଇବା ଲାଗି ଘେନିଗଲେ । ଦୁର୍ଗାଦାସ କହିଲେ—''ବୀର, ଅଭିବାଦନ କର; ସମ୍ମୁଖରେ ଯୋଧପୁର ରାଜମହିଷୀ ଅରୁନ୍ଧତୀ; ପାର୍ଶ୍ୱରେ ଅଛନ୍ତି ରାଜକୁମାରୀ ଅନ୍ନାଳିକା ।'' ଯୁବକ ଚମକି ଉଠିଲେ । ଆଜିକି ଆଠବର୍ଷ ପୂର୍ବେ ଯେଉଁ ଅମର ମୋହିନୀ ମୂର୍ତ୍ତି ଦେଖିଥିଲେ, ଏ ତ ସେହି ମୂର୍ତ୍ତି । ଯୁବକ ଦୁର୍ଗାଦାସଙ୍କ ଆଦେଶ ଅନୁସାରେ ଅଭିବାଦନ କଲେ, କିନ୍ତୁ ମନେ ମନେ ଭାବୁଥାନ୍ତି, ''ମୁଁ ଜାଗ୍ରତ ନା ଶୁପ୍ତ ? ଏହା ସତ୍ୟ ଘଟଣା, କି ସ୍ୱପ୍ନ ?''

× × × ×

—୪—

# ଆତ୍ମବଳ

ଆଓରଙ୍ଗଜେବ ସିଂହାସନ ଆରୋହଣ କରିବାର ଅଳ୍ପକାଳ ଉତ୍ତାରୁ ଦେଖିଲେ ଯେ ଅମିତବିକ୍ରମ ଯୋଧପୁରରାଜ ଯଶୋବନ୍ତ ସିଂହ ଓ ଅମ୍ବରାଧିପତି ବୀରକେଶରୀ ଜୟସିଂହଙ୍କ ବିନାଶ ସାଧନ କରି ନ ପାରିଲେ ଆର୍ଯ୍ୟାବର୍ତ୍ତରୁ ହିନ୍ଦୁ ଗୌରବ ବିଲୁପ୍ତ ହେବା ଅସମ୍ଭବ । ସେ ଯୁବରାଜ ପୃଥ୍ୱୀ ସିଂହଙ୍କର ବିନାଶ ସାଧନ କରି ବିଷ ପ୍ରୟୋଗ ଦ୍ୱାରା ପୁତ୍ରଶୋକାତୁର ଯଶୋବନ୍ତଙ୍କର ଓ ତାର ଧର୍ମପରାୟଣ ଜୟସିଂହଙ୍କର ଅମୂଲ୍ୟ ଜୀବନ ହରଣ କଲେ । କିନ୍ତୁ ସେତିକେ ସୁଦ୍ଧା ରୁଧିର-ତୃଷ୍ଣା ପରିତୃପ୍ତ ହେଲାନାହିଁ । ଯୋଧପୁର ରାଜାଙ୍କର ନବଜାତ ଶିଶୁ ସନ୍ତାନ ଜୀବିତ ଥାଉଁ ଥାଉଁ ତାଙ୍କର ହୃଦୟ ଶାନ୍ତି ଲାଭ କରି ପାରିଲା ନାହିଁ । ସମ୍ରାଟ ଅନୁଚରବର୍ଗଙ୍କୁ ଆଦେଶ ଦେଲେ—"କଳେବଳେ କୌଶଳେ ପ୍ରଲୋଭନ ପ୍ରଦର୍ଶନ ଅଥବା ତରବାରୀ ସଞ୍ଚାଳନ ଦ୍ୱାରା, ଯେପରି ହେଉ ଶିଶୁ ରାଜକୁମାରଙ୍କୁ ଜନନୀ କ୍ରୋଡ଼ରୁ ଅପହରଣ ପୂର୍ବକ ବିନାଶ କରିବାକୁ ହେବ ।" ନିର୍ମମ ସମ୍ରାଟଙ୍କର ସେ କଠୋର ଆଦେଶ ରାଠୋର ସେନାପତି ଦୁର୍ଗାଦାସଙ୍କର କର୍ଣ୍ଣଗୋଚର ହେଲା । ସେ ପତି ବିୟୋଗ ବିଧୁରା, ପୁତ୍ର ଶୋକାତୁର ରାଜମହିଷୀଙ୍କୁ କୀୟତ୍‌କାଳ ନିମିତ୍ତ ମିବାରରେ ତାହାଙ୍କର ପିତୃ ଭବନରେ ରଖି ଆସି ରଣସଜ୍ଜାରେ ପ୍ରବୃତ୍ତ ହେଲେ । ଅମ୍ବରରାଜ ଜୟସିଂହଙ୍କର କନିଷ୍ଠ ମହିଷୀ ସେହି ସମୟରେ ସ୍ୱୀୟ ଶିଶୁ ତନୟାଙ୍କୁ ରାଣାଙ୍କ ନିକଟରେ ସମର୍ପଣ କରି ମୃତ ପତିଙ୍କ ଉଦ୍ଦେଶ୍ୟରେ ଚିତାରୋହଣ କରିବା ମାନସରେ ମିବାର ଆସିଥିଲେ । ଉଦୟପୁରଠାରେ ଉଭୟ ବିଧବା ରାଣୀଙ୍କର ସାକ୍ଷାତ ହେଲା । ସେହିଠାରେ ଅମ୍ବର ରାଜମହିଷୀ ଯୋଧପୁର ରାଜମହିଷୀଙ୍କ ହସ୍ତରେ ଶିଶୁ କନ୍ୟାଙ୍କୁ ଅର୍ପଣ କରି ଅଗ୍ନି ପ୍ରବେଶ କରିଥିଲେ । ତଦାବଧି ଆଠ ବର୍ଷ ହେଲା ଅମ୍ବର ରାଜକୁମାରୀ ଅମ୍ବାଳିକା ଯୋଧପୁର ରାଜମହିଷୀ ଅରୁନ୍ଧତୀଙ୍କ କ୍ରୋଡ଼ରେ ଅତି ଯତ୍ନରେ, ଅତି ଆଦରରେ ପ୍ରତିପାଳିତା ।

ବୀର ଦୁର୍ଗାଦାସ ରଣସଜ୍ଜା ସମାପନ କରି ଯଶୋବନ୍ତଙ୍କ ଶିଶୁ ପୁତ୍ର ଅଜିତ ସିଂହଙ୍କୁ ଦୁର୍ଗମ ଆବୁ ଶୈଳରେ ଅତି ନିଭୃତ ସ୍ଥାନରେ ରଖିଆସିଲେ । ଏ ସ୍ଥାନ କତିପୟ ବିଶ୍ୱସ୍ତ ଅନୁଚରଙ୍କ ବ୍ୟତୀତ ଅନ୍ୟ କାହାରିକୁ ଜଣା ନଥିଲା । ମହିଷୀ ସମୟ ସମୟରେ ଯାଇ ସନ୍ତାନକୁ ଦେଖି ଆସୁଥିଲେ । ଆଜି ପୁତ୍ର ସହିତ ସାକ୍ଷାତ କରି ପ୍ରତ୍ୟାବର୍ତ୍ତନ କଲାବେଳେ କାଳନ୍ଦୀ ନଦୀ ତୀରବର୍ତ୍ତୀ ମୁସଲମାନ ଫକୀରଙ୍କ ମନ୍ଦିରରେ ଅବସ୍ଥାନ କରୁଥିଲେ ।

ଶାରଦୀୟ ଶୁକ୍ଳ ଯାମିନୀ ଅବସାନ ପ୍ରାୟ । ପର୍ବତ ମଧ୍ୟବର୍ତ୍ତୀ ସଂକୀର୍ଣ୍ଣ ରାଜପଥରେ ପଥଶ୍ରାନ୍ତ ଦୁର୍ଗାଦାସ ନିଦ୍ରିତ । ଆମ୍ଭମାନଙ୍କର ପୂର୍ବପରିଚିତ ବୀର ଯୁବକ ତାହାଙ୍କ ପାର୍ଶ୍ୱଦେଶରେ ଶୟାନ । କିଞ୍ଚିତ୍ ଦୂରରେ ରାଣୀ ଅରୁନ୍ଧତୀ ଓ ଅମ୍ବାଳିକା ଶୟନ । ଅରୁନ୍ଧତୀ ଦେବୀ ନିଦ୍ରିତା, କିନ୍ତୁ ଏତେ ପଥଶ୍ରାନ୍ତ ପରେ ସୁଦ୍ଧା ବାଳିକା ଅମ୍ବାଳିକା ଆଖିରେ ନିଦ ନାହିଁ । ବୀର ଯୁବକ ଜାଣନ୍ତି ନାହିଁ ଯେ, ତାଙ୍କରି ପରି ରାଜକୁମାରୀ ମଧ୍ୟ ନିଦ୍ରା ସୁଖ ବଞ୍ଚିତା ।

ସହସା କିୟତ୍ ଦୂରରେ ବହୁ ସଂଖ୍ୟକ ଅଶ୍ୱର ପଦଧ୍ୱନି ଶୁଣାଗଲା । ବୀର ଯୁବକ ଚମକିପଡ଼ି ଗାତ୍ରୋତ୍ଥାନ ପୂର୍ବକ ଅସି କୋଷମୁକ୍ତ କଲା ଏବଂ

ଦୁର୍ଗାଦାସଙ୍କୁ ସମ୍ବୋଧନ କରି କହିଲେ,—"ବୀରବର ତରବାରୀ ଧାରଣ କରନ୍ତୁ; ବିଳମ୍ବର ସମୟ ନୁହେଁ, ଦେଖନ୍ତୁ ବହୁ ସଂଖ୍ୟକ ଶତ୍ରୁ ସେନା ସନ୍ନିକଟ ପ୍ରାୟ।" ଦୁର୍ଗାଦାସ ଦେଖିଲେ ଅନତି ଦୂରରେ ଅଶ୍ୱାରୋହୀ ଯବନ ସେନା, ସେ କହିଲେ—ଆମ୍ଭେମାନେ ଦୁଇଜଣ ମାତ୍ର, ଆମ୍ଭେମାନେ ଅବଶ୍ୟ ସମ୍ମୁଖ ସଂଗ୍ରାମରେ ପ୍ରାଣ ଦେବାକୁ ପ୍ରସ୍ତୁତ; କିନ୍ତୁ ରାଜମହିଷୀ ଓ ରାଜକନ୍ୟାଙ୍କୁ କିଏ ରକ୍ଷା କରିବ ? ଯୁବକ କହିଲେ—"ପଥ ଅତି ସଂକୀର୍ଣ୍ଣ—ଏକାବେଳକେ ଅଧିକ ଅଶ୍ୱାରୋହୀ ଅଗ୍ରସର ହେବା ଅସମ୍ଭବ । ଆପଣ ରାଜମହିଷୀ ଓ କୁମାରୀଙ୍କୁ ସଙ୍ଗରେ ଘେନି ପ୍ରସ୍ଥାନ କରନ୍ତୁ । ମୁଁ ଶତ୍ରୁର ଗତିରୋଧ କରିବି ।" ଦୁର୍ଗାଦାସ ଆଉ ଉପାୟନ୍ତର ନଦେଖି ଏ ପ୍ରସ୍ତାବରେ ସମ୍ମତ ହେଲେ ଏବଂ ତାଙ୍କୀଙ୍କୁ ରାଜକନ୍ୟା ସହିତ ଅଶ୍ୱାରୋହଣ କରିବାକୁ ଅନୁରୋଧ କଲେ ।

ଯୁବକ କ୍ଷୁର୍ଣ୍ଣ ମନରେ, ପୂର୍ଣ୍ଣ ଦୃଷ୍ଟିରେ ଥରେ ରାଜକୁମାରୀଙ୍କ ଆଡକୁ ଅନାଇଲେ । ରାଜକୁମାରୀ ସେ ଇଙ୍ଗିତର ମର୍ମ ବୁଝିଲେ—"ଦେଖ, ମୁଁ ତୁମ୍ଭ ଲାଗି ଆତ୍ମବଳି ଦେବାକୁ କିପରି ସୁଖକର ମନେକରେ ।"

ରାଜକୁମାରୀ ଦୁର୍ଗାଦାସ ଓ ରାଜମହିଷୀଙ୍କୁ ସମ୍ବୋଧନ କରି କହିଲେ, "ବୀରବର, ଆପଣ କ୍ଷତ୍ରିୟ । ପ୍ରାଣ ଭୟରେ ଶତ୍ରୁକୁ ପୃଷ୍ଠ ପ୍ରଦର୍ଶନ କରିବା କ'ଣ କ୍ଷତ୍ରିୟର ଧର୍ମ ? ରାଣୀ ! ଆପଣଙ୍କର ଭୀତ ଚିତ୍ତ ହୋଇଥିଲେ ଆପଣ ଦୁର୍ଗାଦାସ ସହିତ ପଳାୟନ କରନ୍ତୁ, ମୁଁ ଏହି ବୀର ଯୁବକର—

ଅସିର ଘୋର ଝନଝନ ନାଦ, ଆତତାୟୀମାନଙ୍କର ହୁଙ୍କାର ଧ୍ୱନିରେ ରାଜକୁମାରୀଙ୍କ କଳକଣ୍ଠ ବିଲୀନ ହେଲା । ସେ ଦେଖିଲେ, ଶତ୍ରୁ ସେନାମାନଙ୍କ ତରବାରୀ ଚତୁର୍ଦ୍ଦିଗରୁ ବୀର ଯୁବକର ଉଥିତ ଅସିକୁ ପ୍ରତିହତ କରିବାକୁ ଲାଗିଲା । ସେ ଅନେକଥର ସମରାଙ୍ଗନରେ ଜଣେ ଜଣ ବୀରଗଣଙ୍କର କରାଳ ମୂର୍ତ୍ତି ଦେଖିଥିଲେ, କିନ୍ତୁ ଜଣେବାଳକ ସଙ୍ଗେ ଦୁଇସହସ୍ର ଯୋଦ୍ଧା ପ୍ରତିଯୋଗିତା ତାଦୃଶ ସୁନ୍ଦର ସୁକୁମାର ବକ୍ଷରେ ଏକାବେଳକେ ଶତ ଶତ ତରବାରୀର ଆଘାତ କେବେ ଦେଖି ନଥିଲେ । ରାଜକୁମାରୀଙ୍କ ଦୃଷ୍ଟିଶକ୍ତି ଲୋପ ହୋଇଗଲା ।" ହାୟ ! ଦୁର୍ଗାଦାସ, ଏହିକି ତୁମର ବୀରଧର୍ମ ।" କହି ସେ ରାଜମହିଷୀଙ୍କ କ୍ରୋଡରେ ମୂର୍ଚ୍ଛିତା ହେଲେ । ଦେଖୁ ଦେଖୁ ରାଜମହିଷୀ ଓ ଦୁର୍ଗାଦାସଙ୍କ ଅଶ୍ୱ ଦ୍ରୁତ ଗତିରେ ଶୈଳ ଶିଖର ଅତିକ୍ରମ କରିଗଲେ ।

× × × ×

—୪—

## ବନ୍ଦୀ

ପ୍ରଭାତରେ ଜଣେ ରମଣୀ ଫକୀରଙ୍କ ମନ୍ଦିର ଦ୍ୱାରଦେଶରେ ଏକାକିନୀ ଦଣ୍ଡାୟମାନା । ଫକୀର ଭୂତଳରେ ଜାନୁପାତ ପୂର୍ବକ ଧ୍ୟାନମଗ୍ନ ଥିଲେ । ଧ୍ୟାନମଗ୍ନ ହେଲାପରେ ଫକୀର ପ୍ରଶ୍ନ କଲେ—"ବତ୍ସ, ଆଜି ତୋର ମୁଖ ମଣ୍ଡଳ ମଳିନ ଦିଶୁଛି କାହିଁକି ? ଆଉ କିଛି ଅଶୁଭ ସମ୍ବାଦ ଆସିଛି କି ?"

ରମଣୀ—"ନାଁ, ଗୁରୋ, ଆପଣଙ୍କ ଶ୍ରୀଚରଣରୁ ବିଦାୟ ନେଇ ଦୁର୍ଗାଦାସଙ୍କ ଗିରିଦୁର୍ଗକୁ ଯିବାକୁ ଇଚ୍ଛାକରେଁ ।"

ଫକୀର—"ଗତ କାଲି ସେହି ବୀର ବାଳକ ସହିତ ତୋର ସାକ୍ଷାତ ହୋଇଥିଲା କି ?, ସେ ତୋତେ ଚିହ୍ନି ପାରିଥିଲା କି ? ତୁ କ'ଣ ପୁନରପି ତାହାର ଦର୍ଶନ ଲାଳସାରେ କାତର ?"

ରମଣୀ—"ଦେବ ! କ୍ଷମା କରନ୍ତୁ, ଆପଣ ତ୍ରିକାଳଜ୍ଞ ହୋଇ ଏ ନାରୀର ହୃଦୟ ବୁଝିପାରିଲେ ନାହିଁ । ଆପଣଙ୍କର ଭ୍ରମ ହୋଇଅଛି । ଏ ଅଭାଗିନୀର ହୃଦୟ ତାଙ୍କର ଦର୍ଶନ ଲାଳସାରେ କଦାପି ବ୍ୟାକୁଳ ନୁହେଁ । ସେ ମୋତେ ଚିହ୍ନିପାରି ନାହାନ୍ତି । ଏ ଜନ୍ମରେ ମୁଁ ତାଙ୍କ ନିକଟରେ ଆତ୍ମପରିଚୟ ପ୍ରଦାନ କରିବି ନାହିଁ । ଗତ ରାତ୍ରିରେ ଯେତେବେଳେ ମନ୍ଦିର ମଧ୍ୟରେ ଅମ୍ବର ରାଜକୁମାରୀ ଆମ୍ବାଳିକା ଓ ରାଜମହିଷୀଙ୍କ ସହିତ, ତାଙ୍କର ସାକ୍ଷାତ ହେଲା, ମୁଁ ସେତେବେଳେ ଅନ୍ତରାଳରୁ ସମସ୍ତ ଦେଖିଅଛି ଏବଂ ରାଜକୁମାରୀ ସହିତ କଥୋପକଥନ କରି ସବୁ ଜାଣିଅଛି । ତଦବଧି ହୃଦୟରେ ନବ ଆଶାର ସଞ୍ଚାର ହୋଇଅଛି ତଦବଧି ଶତ୍ରୁ ବଧାଶାରେ ହୃଦୟ ବ୍ୟାକୁଳ ହେଉଅଛି । ଏ ପ୍ରାଣ ମଧ୍ୟରେ ପିତୃହନ୍ତାର ବଧ କାମନା, ପ୍ରତିହିଂସାନଳ ପ୍ରଜ୍ୱଳିତ ହେଉଅଛି । ବୀର ହୃଦୟ ନାରୀ ପ୍ରେମ ଲାଳସାରେ ଉନ୍ମତ୍ତ ହେଲେ ସେ ଅସାଧ୍ୟ ସାଧନ କରିପାରେ ? ଯଦି ସେ ଜାଣନ୍ତି, ଯବନ ସଂଗ୍ରାମରେ ଜୟଲାଭ କଲେ ତାଙ୍କର ପବିତ୍ର ପ୍ରେମ ସାଧନା ଚରିତାର୍ଥ ହେବ, ତେବେ ଆପଣ ଅଚିରେ ଦେଖିବେ, ସମଗ୍ର ଆର୍ଯ୍ୟାବର୍ତ୍ତ ଯବନ ରକ୍ତ ସ୍ରୋତରେ ପ୍ଲାବିତ ହେବ । ମୁଁ ମଧ୍ୟ ଯବନ ସଂଗ୍ରାମ ଶେଷରେ ବୀର ଯୁବକ ସହିତ ସୁନ୍ଦରୀ କୁଳେଶ୍ୱରୀ ଅମ୍ବର କୁମାରୀଙ୍କ ପରିଣୟ ଉତ୍ସବ ଦେଖି ଜୀବନ ସାର୍ଥକ କରିବି ।"

ରମଣୀ ଫକୀରକୁ ଅଭିବାଦନ କରି ସେଠାରୁ ପ୍ରସ୍ଥାନ କଲେ, ଫକୀର ପୁନର୍ବାର ଧ୍ୟାନମଗ୍ନ ହେଲେ । କିୟତ କ୍ଷଣପରେ ଚକ୍ଷୁ ଉନ୍ମୀଳନ କରି ଦେଖିଲେ, ବହୁ ସଂଖ୍ୟକ ମୁସଲମାନ ସେନା ଶୃଙ୍ଖଳାବଦ୍ଧ ବୀର ଯୁବକକୁ ସଙ୍ଗରେ ଘେନି ତାଙ୍କ ଆଡ଼କୁ ଅଗ୍ରସର ହେଉଅଛନ୍ତି । ସେମାନେ ଫକୀରଙ୍କ ସମ୍ମୁଖୀନ ହେବା ମାତ୍ରେ ସେ ଆଫଜଲ ଖାଁଙ୍କୁ ସମ୍ବୋଧନ କରି କହିଲେ, "ମୁଁ ଜାଣେ ମୋର ବିଦ୍ରୋହାଚରଣର ଦଣ୍ଡ ବିଧାନ ଲାଗି ମୋତେ ବାଦସାହଙ୍କ ନିକଟକୁ ଘେନିଯିବା ତୁମ୍ଭମାନଙ୍କର ଉଦ୍ଦେଶ୍ୟ । ଚାଲ, ବଳ ପ୍ରୟୋଗର ପ୍ରୟୋଜନ ନାହିଁ, ମୁଁ ପ୍ରସ୍ତୁତ ଅଛି । ଫକୀର ସହାସ୍ୟ ବଦନରେ ଶୃଙ୍ଖଳା ପରିଧାନ କରି ସେମାନଙ୍କ ସଙ୍ଗରେ ଚାଲିଲେ ।

× × × ×

—୨—

## ବାଦଶାହଙ୍କ ଦରବାର

ପ୍ରଭାତରେ ଆଜମୀର ନଗରରେ ବାଦଶାହଙ୍କ ଦରବାର । ମର୍ମର ପ୍ରସ୍ତରନିର୍ମିତ ବିଶାଳ ସ୍ତମ୍ଭରାଶୀ ଦୀପ୍ତିମାନ ମଣିମୁକ୍ତାଭରଣରେ ଶୋଭିତ ।

ତଦୁପରି ହୀରକଦାମ ଖଚିତ ଚନ୍ଦ୍ରାତପ ବିଲମ୍ବିତ । ସମ୍ମୁଖରେ ହେମସିଂହାସନୋ ପରିପ୍ରାନ୍ତଃ ସୂର୍ଯ୍ୟକିରଣ ପଡ଼ିତ ହୋଇ ଝକଝକ ହେଉଅଛି । ସମସ୍ତେ ନୀରବ, ନିସ୍ତବ୍ଧ; ସେନାସମୂହ 'ଚିତ୍ରାର୍ପିତଇବ' ଦଣ୍ଡାୟମାନ ହୋଇ ସମ୍ରାଟଙ୍କ ଆଗମନ ପ୍ରତୀକ୍ଷା କରୁଅଛନ୍ତି । ପ୍ରହରୀ ବେଷ୍ଟିତ ବୀର ଯୁବକ ଓ ଫକୀର ଏକ ପାର୍ଶ୍ୱରେ ଦଣ୍ଡାୟମାନ । ସହସା— "ଅଲ୍ଲା ହୋ ଆକବର" ଶବ୍ଦ ଉଚ୍ଚାରିତ ହେଲା; ସମ୍ରାଟ ବିଜେ କରନ୍ତେ ସଭାସଦ୍‌ଗଣ ଅଭିବାଦନ କଲେ; ସଭାସ୍ଥଳ ପୁନର୍ବାର ନୀରବ ହେଲା ।

ଆଓରଙ୍ଗଜେବ୍ ମୁହୂର୍ତ୍ତ ମାତ୍ର ନୀରବ ହୋଇ ଗମ୍ଭୀର ସ୍ୱରରେ କହିଲେ— "ସଭାସଦ୍ ବୃନ୍ଦ ! ସନାତନ ମହମ୍ମଦୀୟ ଧର୍ମ ପ୍ରଚାରକଗଣ ! ଆଜି ପର୍ଯ୍ୟନ୍ତ ମୁସଲମାନ ଧର୍ମ ପ୍ରଚାର ଲାଗି ଆମ୍ଭେମାନେ ବହୁ ଚେଷ୍ଟା କରିଥିଲୁଁ, ମାତ୍ର ଆଜି ଆଫଜଲ ଖାଁଙ୍କ ଆବେଦନରୁ ଅବଗତ ହେଲୁଁ, ଅମ୍ଭମାନଙ୍କର ସମସ୍ତ ଚେଷ୍ଟା ଜଣେ ଫକୀରଙ୍କ ବିଦ୍ରୋହାଚରଣ ହେତୁରୁ ବ୍ୟର୍ଥ ହେଉଅଛି । ସେ ହିନ୍ଦୁ ପକ୍ଷ ସମର୍ଥନ କରି ବହୁ ସଂଖ୍ୟକ ମୁସଲମାନ ସେନାଙ୍କର ପ୍ରାଣ ବିନାଶ କରୁଅଛନ୍ତି । ତେଣୁ ଆଫଜଲ ଖାଁ ଯଥାଦଣ୍ଡ ବିଧାନର ପ୍ରାର୍ଥନା କରିଅଛନ୍ତି; କିନ୍ତୁ ଏ ଅଭିଯୋଗ ସତ୍ୟ ବୋଲି ମୁଁ ବିଶ୍ୱାସ କରିପାରୁ ନାହିଁ । ଯଦି ଆଫଜଲ ଖାଁ ତାଙ୍କର ଅଭିଯୋଗ ପ୍ରମାଣୀକୃତ କରି ନପାରନ୍ତି, ତେବେ ଏହା ମିଥ୍ୟା ବୋଲି ପରିତ୍ୟକ୍ତ ହେବ ।"

ଆଫଜଲ ଖାଁ ଯୁକ୍ତକରରେ କହିଲେ, ସେହି ଫକୀର ସ୍ୱୟଂ ସଭାସ୍ଥଳରେ ଉପସ୍ଥିତ, ତାଙ୍କୁ ପ୍ରଶ୍ନ କରନ୍ତୁ ।"

ଆଓରଙ୍ଗଜେବ୍ ସହାସ୍ୟ ବଦନରେ ଫକୀରଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କରି କହିଲେ—"ତେବେ ଆପଣ ଅଗ୍ରସର ହୁଅନ୍ତୁ; ଏହି ସମବେତ ସଭାସଦ୍-ବର୍ଗଙ୍କ ସମ୍ମୁଖରେ ଆପଣଙ୍କ ପବିତ୍ର ନାମରୁ ଏ ଘୋର କଳଙ୍କ ଅପନୋଦନ କରନ୍ତୁ ।"

ଫକୀର ବିଶାଳ ଶାଳପ୍ରାଂଶୁ ବାହୁ ଦ୍ୱୟ ଉତ୍ତୋଳନ କରି ଗମ୍ଭୀର ସ୍ୱରରେ କହିଲେ, "ଶୁଣନ୍ତୁ ସମ୍ରାଟ ଶୁଣନ୍ତୁ ସମବେତ ଭଦ୍ରମଣ୍ଡଳୀ, ଆଫଜଲ ଖାଁଙ୍କର ଆବେଦନ ସଂପୂର୍ଣ୍ଣ ସତ୍ୟ । ଅଶୀତି ବର୍ଷ କାଳ ଦେବ ମହମ୍ମଦଙ୍କର ପବିତ୍ର ଉପଦେଶ ସମୂହ ଅଧ୍ୟୟନ କରି ଯେଉଁ ଶିକ୍ଷାଲାଭ କରିଅଛି, ସେହି ପବିତ୍ର ନୀତିର ଅନୁସରଣ କରି ନୀଚାଶୟ, ଅଦୂରଦର୍ଶୀ ସ୍ୱାର୍ଥପର ବାଦସାହଙ୍କର ନିଷ୍ଠୁର ନୀତି ବିରୁଦ୍ଧରେ ଅସ୍ତ୍ର ଧାରଣ କରିଅଛି । ଅମିତ ବିକ୍ରମ ମୋଗଲ ସମ୍ରାଟଙ୍କ ବିରୁଦ୍ଧରେ ମୋ ପରି ସଂସାରତ୍ୟାଗୀ ହୀନବଳ ଫକୀରର ଅସି ଧାରଣ ମତ୍ତ ମାତଙ୍ଗର ଶୁଣ୍ଡୋପରି ମକ୍ଷିକା ଦଂଶନ ମାତ୍ର । କିନ୍ତୁ ଯେତେ-ଦିନ ଏ ନଶ୍ୱର ଦେହରେ ଶୋଣିତ ସଂଚାଳିତ ହେଉଥିବ, ଏ ବାହୁ ଦ୍ୱୟରେ ଶିଶୁର ଶକ୍ତି ମାତ୍ର ବିଦ୍ୟମାନ ଥିବ, ଯେତେଦିନ ପର୍ଯ୍ୟନ୍ତ ପାପ ପୁଣ୍ୟର ସଂଗ୍ରାମରେ ପାପର ବିରୁଦ୍ଧରେ ମୁଁ ପ୍ରାଣପଣେ ଯୁଦ୍ଧ କରିବି— ଏହା ମୋର ପ୍ରତିଜ୍ଞା ଓ ଗୁରୁଦେବ ଇଷ୍ଟଦେବ ମହମ୍ମଦଙ୍କର ଆଦେଶ ।"

ସଭାସଦ୍ ମଣ୍ଡଳୀ ବିସ୍ମିତ ଓ ସ୍ତମ୍ଭିତ । ବାଦସାହ କ୍ଷଣମାତ୍ର ନୀରବ ରହି ଗମ୍ଭୀର ଭାବରେ ଆଦେଶ ଦେଲେ, "କପଟ ଆଚାରୀ, ଫକୀର ବେଶୀ ପାଷାଣ୍ଡ । ତୁମ୍ଭେ ପାପ ରସନାରେ ମହମ୍ମଦଙ୍କର ନାମ କଳଙ୍କିତ କରିଅଛ;

ରାଜସିଂହାସନର ଅବମାନନା କରିଅଛ । ତେଣୁ ତୁମ୍ଭପ୍ରତି ଭାରତ ସରକାରଙ୍କର ଆଦେଶ ଯେ, କାଲି ପ୍ରାତଃକାଳରେ ତୁମ୍ଭର ଜିହ୍ୱା ଛେଦନ କରାଯିବ ।

ତଦନନ୍ତର ବନ୍ଦୀ ଯୁବକ ପ୍ରହରୀଗଣ କର୍ତ୍ତୃକ ଆନୀତ ହେଲେ । ବାଦସାହ ତାହାଙ୍କ ଉପରେ ଦୃଷ୍ଟି ନିକ୍ଷେପ କରି ଏବଂ ସଭାସଦଗଣଙ୍କୁ ସମ୍ବୋଧନ କରି କହିଲେ, "ଏହି ସୁକୁମାର ବପୁ ସୁନ୍ଦର ଯୁବା ହିନ୍ଦୁ ହେଲେ ମଧ୍ୟ ବଳରେ ପରାକ୍ରମରେ ତେଜରେ ଏଠାରେ ସମବେତ ସମସ୍ତଙ୍କ ଅପେକ୍ଷା ବଳୀୟାନ୍, ପରାକ୍ରମୀ, ତେଜୀୟାନ । ଏହାଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଇ ଉଚ୍ଚ ପଦବୀରେ ପ୍ରତିଷ୍ଠିତ କରାଯିବ ।

ବୀର ଯୁବକ ସସ୍ମିତ ମୁଖରେ କହିଲେ "ସମ୍ରାଟ, ଏ ବାହୁ ଦ୍ୱୟ ହିନ୍ଦୁ ଧର୍ମ ବିରୋଧୀ ମୁସଲମାନଙ୍କ ବକ୍ଷ ବିଦାରଣ ଲାଗି ସୃଷ୍ଟି, ସେମାନଙ୍କ ସେବା ଲାଗି ସୃଷ୍ଟି ନୁହେଁ ।" ବାଦସାହ କ୍ରୋଧରେ ପ୍ରଜ୍ୱଳିତ ହୋଇ ଉଠିଲେ । ତାଙ୍କର ନେତ୍ର ଦ୍ୱୟରୁ ଅଗ୍ନି ସ୍ଫୁଲିଙ୍ଗ ବହିର୍ଗତ ହେଲା । ସେନାଗଣଙ୍କ ମଧ୍ୟଦେଶରୁ କାଳାନ୍ତକ ମୂର୍ତ୍ତି ଘାତକ ଉନ୍ମୁକ୍ତ ଅସିହସ୍ତ ହୋଇ ଅଗ୍ରସର ହେଲା । ବୃଦ୍ଧ ଫକୀର ସମ୍ରାଟଙ୍କ ନିକଟକୁ ଆସି ଗମ୍ଭୀର ଧ୍ୱନିରେ କହିଲେ, "ସମ୍ରାଟ ଅଓରଙ୍ଗଜେବ ! ମୂର୍ଖତାର ସୀମା ଅଛି, ଅଦୂର ଦର୍ଶିତାର ପରିଣାମ ଅଛି । ଏହି ଯୁବା ଦେହରୁ ଏକ ବିନ୍ଦୁ ମାତ୍ର ରକ୍ତ ଭୂତଳରେ ପତିତ ହେବା ମାତ୍ରେ ତୁମ୍ଭର ମସ୍ତିଷ୍କ ଭୂଲୁଣ୍ଠିତ ହେବ ।"

ଅଓରଙ୍ଗଜେବ୍ ଅଧର ଦଂଶନ କରି କହିଲେ—"ଉନ୍ମତ୍ତ ! ମୁଁ ଯେ ଭାରତ ସମ୍ରାଟ ।" ଫକୀର ତୀବ୍ର କଟାକ୍ଷରେ ବାଦସାହଙ୍କର ମୁଖମଣ୍ଡଳ ନିରୀକ୍ଷଣ କରି କହିଲେ, "ତୁମ୍ଭେ ସମ୍ରାଟ ? ଉର୍ଦ୍ଧ୍ୱକୁ ଥରେ ଅନାଇ ଦେଖ ସମ୍ରାଟ କିଏ ?" ବାଦସାହ ଉର୍ଦ୍ଧ୍ୱକୁ ଚାହିଁ ମର୍ମାହତ ପ୍ରାୟ ମୂର୍ଚ୍ଛିତ ହେଲେ । ବାଦସାହ ପୀଡ଼ିତ ହେବାର ଦେଖି ତାହାଙ୍କୁ ବିଶ୍ରାମ ଭବନକୁ ଘେନିଗଲେ ।

ସମ୍ରାଟଙ୍କ ହୃଦୟ ଅନୁତାପାନଳରେ ଦଗ୍ଧ ହେବାକୁ ଲାଗିଲା, କିୟତ୍‌କ୍ଷଣ ଉତ୍ତାରୁ ଅନ୍ତଃପୁରରୁ ସମ୍ରାଟ ଆଦେଶ ପ୍ରେରଣ କଲେ—ବନ୍ଦୀ ଯୁବକ ଓ ବୃଦ୍ଧ ଫକୀରଙ୍କୁ ଅଚିରେ ମୁକ୍ତିଦାନ କର ।

× × × ×

—୨—

## "କାର୍ଯ୍ୟଂ ବା ସାଧୟେତ୍ ଶରୀରଂ ବା ପାତୟେତ୍ ।"

ସଂଧ୍ୟା ପୂର୍ବରୁ ବୀର ଯୁବା ଆରାବଳୀ ଗିରୀର ପାଦଦେଶରେ ଏକାକୀ ଚିନ୍ତାମଗ୍ନ । ସେ ଜାଣନ୍ତି, ରାଠୋର ସେନାପତି ଦୁର୍ଗାଦାସ ପର୍ବତର ଉପତ୍ୟକାରେ ଅବସ୍ଥାନ କରୁଥିଲେ । କିନ୍ତୁ ସେ କିପରି ଦୁର୍ଗମ ପଥ ଅତିକ୍ରମ

କରିଯିବେ ସ୍ଥିର କରି ନପାରି ସେଠାରେ ଉପବେଶନ କରିଥିଲେ । କିୟତ-କ୍ଷଣପରେ ଜନୈକ ରମଣୀ ତାହାଙ୍କ ସମ୍ମୁଖବର୍ତ୍ତିନୀ ହେଲା ଏବଂ ପ୍ରଶ୍ନ କଲା, "ବର୍ତ୍ତମାନ ମୋତେ ଚିହ୍ନି ପାରୁଅଛ ?" ଯୁବା କହିଲା—"ତୁମେ ସୁରସୁନ୍ଦରୀ ।" ରମଣୀ ସହାସ୍ୟ ବଦନରେ ଉତ୍ତର ଦେଲା—କିନ୍ତୁ ମୋତେ ସୁରସୁନ୍ଦରୀ ସମ୍ବୋଧନ ନକରି ମୋତେ ବିଳାସ କୁମାରୀ ବୋଲି ସମ୍ବୋଧନ କରିବ । ମୁଁ ଶୈଶବ କାଳରେ ଅତ୍ୟନ୍ତ ବେଶଭୂଷା ପ୍ରିୟ ଥିଲି; ତେଣୁ ପିତା ନାମ ଦେଇଥିଲେ 'ବିଳାସ କୁମାରୀ ।' ସେ ଯାହାହେଉ ତୁମେ ଏଠାରେ ବସି କ'ଣ ଚିନ୍ତା କରୁଥିଲ ?"

ଯୁବକ—"ରାଠୋର ସେନାପତି ଦୁର୍ଗାଦାସ ଏହି ପର୍ବତୋପରି ଅବସ୍ଥାନ କରୁଅଛନ୍ତି, ସେଠାରେ କିପରି ଉପସ୍ଥିତ ହୋଇପାରିବି, ତାହା ଭାବୁଥିଲି ।"

ରମଣୀ—" ଚାଲ, ସେହିଠାକୁ ମୁଁ ତୁମକୁ ନେଇଯିବି ବୋଲି ଆସିଛି । କିନ୍ତୁ ସେଠାରେ ତୁମ୍ଭେ ଅମ୍ବର ରାଜକୁମାରୀଙ୍କ ଦର୍ଶନ ଲାଭ କରିପାରିବ ନାହିଁ ।"

ଯୁବକ ଚମକିପଡ଼ି ପ୍ରଶ୍ନ କଲେ—"ତେବେ ରାଜକୁମାରୀ କେଉଁଠାରେ ?"

ରମଣୀ—"ରାଜକୁମାରୀଠାରେ ତୁମ୍ଭର ପ୍ରୟୋଜନ୍ କ'ଣ ? ତୁମ୍ଭେ ବୀର ଯୋଦ୍ଧା, ସେ ଅବଳା ରମଣୀ; ତୁମ୍ଭେ ଦରିଦ୍ର ସୈନିକ ସେ ରାଜନନ୍ଦିନୀ । ମୁଁ ଜାଣେ ତୁମ୍ଭେ ରାଜକୁମାରୀଙ୍କ ପ୍ରେମରେ ମୁଗ୍ଧ; କିନ୍ତୁ ବର୍ତ୍ତମାନ କ'ଣ ତୁମ୍ଭର ପ୍ରେମ କରିବାର ସମୟ ? ତୁମ୍ଭର ସ୍ୱର୍ଗାଦପି ଗରୀୟସୀ ଭାରତ ଜନନୀ ଯବନ ପଦ ପ୍ରାନ୍ତରେ ଲୁଣ୍ଠିତା, ଏତେବେଳେ ତୁମ୍ଭର ଅନ୍ତର ନାରୀ ପ୍ରେମରେ ବିଗଳିତ । ଏହି କି କ୍ଷତ୍ରିୟ ଧର୍ମ ? ଏତେବେଳେ ଚତୁର୍ଦ୍ଦିଗ ଆର୍ଯ୍ୟ ଜାତିର ହାହାକାର ଧ୍ୱନିରେ ପୂର୍ଣ୍ଣ, କିନ୍ତୁ ତୁମର ହୃଦୟ ରମଣୀ ଦର୍ଶନ—ଲାଳସାରେ କାତର । ଛି ! ରାଠୋର ସେନାପତି ଦୁର୍ଗକୁ ଯିବା ପୂର୍ବରୁ ମୋ ନିକଟରେ ପ୍ରତିଜ୍ଞା କର, ଯେତେଦିନ ଯାଏ ଯୁଦ୍ଧ ଶେଷ ନହେବ, କାୟମନୋବାକ୍ୟରେ ଶତ୍ରୁକ୍ଷୟ କାମନା କରିବ । ପ୍ରଥମେ ଶତ୍ରୁ ପରାଜୟ, ତଦନନ୍ତର ନାରୀର ପ୍ରେମ ସମ୍ଭୋଗ ।"

ଯୁବକ—"ଦେବୀ ! ଅନେକଦିନୁ ଯବନ ବଧ ମହାମନ୍ତ୍ରରେ ଦୀକ୍ଷିତ ହୋଇଅଛି । ଚିର ଜୀବନ ଶରୀରର ପତନ ବା ମନ୍ତ୍ରସାଧନ—ଏହା ମୋର ପ୍ରତିଜ୍ଞା ।"

ରମଣୀ—"ତେବେ ଚାଲ ତୁମ୍ଭଙ୍କୁ ଦୁର୍ଗାଦାସଙ୍କ ମନ୍ଦିରକୁ ନେଇଯାଏଁ ।'

×      ×      ×      ×

—୮—

# ଦୁର୍ଗ ରକ୍ଷା କରିବ କିଏ ?

ହିନ୍ଦୁ ବୀରଗଣ ଯେବେ ଶିବିର ଆକ୍ରମଣାର୍ଥେ ଗମନ କରିବେ; କିନ୍ତୁ ଦୁର୍ଗ ରକ୍ଷାର ଭାର ଅର୍ପିତ ହେବ କାହା ଉପରେ ? ଦୁର୍ଗାଦାସଙ୍କୁ ଅନତି ବିଳମ୍ବେ ଦାକ୍ଷିଣାତ୍ୟ ଯାତ୍ରା କରିବାକୁ ହେବ । ଦୁର୍ଗ ମଧ୍ୟରେ ବହୁ ସଂଖ୍ୟକ ରାଜବଂଶୀୟ ରମଣୀ ଅବସ୍ଥାନ କରୁଅଛନ୍ତି, ସେମାନଙ୍କୁ ରକ୍ଷା କରିବାର ଭାର କେଉଁ ବୀର ପୁରୁଷଙ୍କ ହସ୍ତରେ ନ୍ୟସ୍ତ ହେବା ଉଚିତ ? ହରବତୀ ରାଜବଂଶୀୟ କୁମାର ବିଜୟପାଳ ଏ ସମ୍ମାନିତ ପଦର ଯୋଗ୍ୟ ବୋଲି ଦୁର୍ଗାଦାସଙ୍କ ଅଭିମତ, କିନ୍ତୁ ଏଥିରେ ଅନ୍ୟାନ୍ୟ ରାଜପୁରୁଷମାନେ ଆପଣାକୁ ଅପମାନିତ ଜ୍ଞାନ କରିବେ । ବିଶେଷତଃ ବିଜୟପାଳଙ୍କର ବଂଶ ଗୌରବ ଓ ବୀରତ୍ୱ ଉଚ୍ଚା ନହେଲେ ହେଁ, ସେ ଲୋକ ସମାଜରେ ସମ୍ମାନାର୍ହ ନୁହନ୍ତି । ସେ ଅସୀମ ସାହସୀ ସତ୍ୟ, କିନ୍ତୁ କାଣ୍ଡଜ୍ଞାନ ଶୂନ୍ୟ, ଗୁରୁ ଓ ଲଘୁ ସର୍ବବିଧ ବିଷୟରେ ତାଙ୍କର ଏକପ୍ରକାର ଭାବ, ସେ ଅପରିମିତ ଅହିଫେନସେବୀ; ଆବାଳ ବୃଦ୍ଧ ବନିତା ସମସ୍ତଙ୍କ ସହିତ ତାଙ୍କର ରହସ୍ୟ ଓ ପରିହାସ କରିବା ଅଭ୍ୟାସ । ଅନେକ ତାଙ୍କୁ ମୂର୍ଖ ବୋଲି ଉପହାସ କରନ୍ତି, ଏବଂ କେହି କେହି ତାଙ୍କୁ ପାଗଳ ବୋଲି ଅବଜ୍ଞା କରନ୍ତି । ସୁତରାଂ ତାଙ୍କୁ ଏ ଗୁରୁଭାର ଦେବା ଉଚିତ କି ନା; ତାହା ସ୍ଥିର କରି ନପାରି ରାଣୀ ଅରୁନ୍ଧତୀଙ୍କ ନିକଟରେ ଦୁର୍ଗାଦାସଙ୍କ ସମସ୍ତ କଥା ଜଣାଇଲେ । ରାଣୀ କହିଲେ—"ସର୍ବାପେକ୍ଷା ଶ୍ରେଷ୍ଠ ବୀରଙ୍କ ଉପରେ ଏ ଭାର ଅର୍ପିତ ହେବା ଉଚିତ୍ ।" କିନ୍ତୁ ସର୍ବାପେକ୍ଷା ଶ୍ରେଷ୍ଠ ବୀର କିଏ, ତାହା ନିର୍ଣ୍ଣୟ ହେବା ତ କଠିନ ବ୍ୟାପାର ।

ପରଦିନର ପ୍ରଭାତରେ ଦୁର୍ଗର ଅର୍ଦ୍ଧକୋଶ ଦୂରରେ ନଦୀର ଅପର ପାର୍ଶ୍ୱରେ ଶିବିର ସ୍ଥାପିତ ହୋଇଅଛି । ଦୁର୍ଗମଧ୍ୟସ୍ଥ ଉଚ୍ଚ ଶୈଳଶୃଙ୍ଗୋପରି ରକ୍ତ ପତାକା ଉଡ୍ଡୀୟମାନ । ଶିବିର ସମୀପରେ ବହୁଜନସମାଗମ । ସମସ୍ତେ ଉତ୍ସୁକ ନୟନରେ ଦୂରବର୍ତ୍ତୀ ଶୈଳଶିଖରେ ପରି ଉଡ୍ଡୀୟମାନ ରକ୍ତ ପତାକାକୁ ଅନାଇ ରହିଅଛନ୍ତି । ସେବ ସମକ୍ଷରେ ରାଠୋର ସେନାପତି ଦୁର୍ଗାଦାସ ଦଣ୍ଡାୟମାନ । ଦୁର୍ଗୋପରି ରମଣୀଗଣ କୌତୂହଳାବିଷ୍ଟ ହୋଇ ଶିବିର ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଅଛନ୍ତି । ବିଜୟପାଳ ଅଶ୍ୱାରୋହଣ ପୂର୍ବକ ଦୁର୍ଗାଦାସଙ୍କ ନିକଟରେ ଉପସ୍ଥିତ ହୋଇ ଥରେ ବଙ୍କିମ ଚକ୍ଷୁରେ ଚତୁର୍ଦ୍ଦିଗ ନିରୀକ୍ଷଣ କଲେ । ତଦନନ୍ତର ଦୁର୍ଗାଦାସ ଉଚ୍ଚ ଗମ୍ଭୀର ସ୍ୱରରେ କହିବାକୁ ଲାଗିଲେ, "ଶୁଣନ୍ତୁ ରାଜପୁତ ବୀରବୃନ୍ଦ : ଆମ୍ଭମାନଙ୍କର ଅନୁପସ୍ଥିତରେ ରାଜ ମହିଷୀ, ରାଜକୁମାରୀ ଓ ରମଣୀଗଣଙ୍କ ରକ୍ଷାଭାର ବୀରଶ୍ରେଷ୍ଠ କୁମାର ବିଜୟପାଳଙ୍କ ଉପରେ ନ୍ୟସ୍ତ କରିବାର ସ୍ଥିର କରିଥିଲୁ, ମାତ୍ର ଏଥିରେ ଆପତ୍ତି ଉତ୍ଥାପିତ ହେବାରୁ ଆଜି ସେଥିର ନିର୍ଦ୍ଧାରଣ ନିମିତ୍ତ ଏ ବୀର-ପ୍ରଦର୍ଶନୀ ଆହୂତ ହୋଇଅଛି । ଶୈଳଶୃଙ୍ଗୋପରି ଯେଉଁ ରକ୍ତ ପତାକା ଉଡ୍ଡୀୟମାନ ହେଉଅଛି, ଯେ ସର୍ବ ପ୍ରଥମେ ତାହା ଉତ୍ପାଟନ କରି ଏଠାକୁ ଘେନିଆସିବେ ସେହି ବୀର ଶ୍ରେଷ୍ଠ ବୋଲି ପରିଗଣିତ ହେବେ ଏବଂ ତାଙ୍କରି ଗଳାରେ ଜୟମାଲ୍ୟ ଲମ୍ବିତ ହେବ । ଆପଣମାନଙ୍କ ମଧ୍ୟରୁ କେହି ଏ ପ୍ରତିଯୋଗିତାରେ ଜୟଲାଭାଭିଳାଷୀ ଥିଲେ ଅଗ୍ରସର ହେଉନ୍ତୁ । ଅଶ୍ୱାରୋହଣ ପୂର୍ବକ ବିଜୟପାଳଙ୍କ ସହିତ ଧାବିତ ହୋଇ ସମ୍ମୁଖସ୍ଥ ଶୈଳଶୃଙ୍ଗ ସମୂହ ଉଲ୍ଲଂଘନ

କରି ସନ୍ତରଣ ଦ୍ୱାରା ସ୍ରୋତସ୍ୱତୀ ଅତିକ୍ରମ କରି, ଦୁରାରୋହ ଶୈଳଶୃଙ୍ଗ ଆରୋହଣ ପୂର୍ବକ ଏହି ରକ୍ତ ପତାକା ଆନୟନ କରନ୍ତୁ ।"

× × × ×

ଦୁର୍ଗାଦାସଙ୍କ କଥା ଶେଷ ହେବା ପୂର୍ବରୁ ଚାରିଆଡ଼େ କୋଳାହଳ ଶୁଭିଲା, ତହିଁ ସଙ୍ଗେ ସଙ୍ଗେ କରତାଳି ଉତ୍ଥିତ ହେଲା । ଶିବିରର ଅପରପାର୍ଶ୍ୱରୁ ଜଣେ ଅଜାତଶ୍ମଶ୍ରୁ, ସସ୍ମିତ ବଦନ, ମନୋଜ୍ଞ ଦର୍ଶନ ତରୁଣ ଅଶ୍ୱାରୋହୀ ଅଗ୍ରସର ହୋଇ ଦୁର୍ଗାଦାସଙ୍କୁ ଅଭିବାଦନ କରି ବିଜୟପାଳଙ୍କ ପାର୍ଶ୍ୱଦେଶରେ ଦଣ୍ଡାୟମାନ ହେଲେ । ବିଜୟପାଳ ବିଦ୍ରୁପାତ୍ମକ ଦୃଷ୍ଟିରେ ଥରେ ସେହି ଅଶ୍ୱାରୋହୀର ଆପାଦମସ୍ତକ ନିରୀକ୍ଷଣ କଲେ । ଉଭୟଙ୍କ ଅଶ୍ୱ ଦ୍ରୁତଗତିରେ ଧାବମାନ ହେଲେ । ଦର୍ଶକଗଣ ଅନୁମାନ କଲେ—ନବାଗତ ସୈନିକ କର୍ତ୍ତୃକ ବିଜୟପାଳ ପରାଜିତ ହେବା ଅସମ୍ଭବ ନୁହେଁ । ତାହାଙ୍କ ଅଶ୍ୱ ଅବଳୀଳା କ୍ରମେ ବିଜୟପାଳଙ୍କ ସହିତ ଶୈଳଖଣ୍ଡ ସମୂହ ଉଲ୍ଲଙ୍ଘନ କରିଗଲା । ନିର୍ଭୟରେ ଆରୋହୀ ସହ ସ୍ରୋତସ୍ୱତୀ ଅତିକ୍ରମ କରିଗଲା, ବିଦ୍ୟୁତ୍ ଗତିରେ ଦୁରାରୋହ ପର୍ବତ ଉପରେ ଆରୋହଣ କଲା, ଅଳ୍ପକ୍ଷଣ ମଧ୍ୟରେ ଉଭୟେ ଦୁର୍ଗର ପାର୍ଶ୍ୱସ୍ଥିତ ଶୃଙ୍ଗ ତଳେ ଉପସ୍ଥିତ ହେଲେ । ଏତେବେଳଯାଏ ସୁଦ୍ଧା କିଏ କାହାକୁ ଜିଣିବ, ବୋଲିବା ଅସମ୍ଭବ । ଶୃଙ୍ଗର ଉପରକୁ ଯାଇ ପତାକା ଆଣିବାଟା କଠିଣ ବ୍ୟାପାର । ଉଭୟେ ଯେପରି କ୍ଲାନ୍ତି ଦୂର କରିବା ମାନସରେ ଏହିଠାରେ ଦଣ୍ଡାୟମାନ ହୋଇ ଥରେ ରକ୍ତ ପତାକା ଆଡ଼କୁ ଥରେ ଆକାଶ ପ୍ରତି ନିରାଶ ହୃଦୟରେ ଦୃଷ୍ଟିପାତ କଲେ । ଉଭୟେ ଉଭୟଙ୍କ ପ୍ରତି ଆଉ ଥରେ ଅନାଇ ପୁନର୍ବାର ଅଶ୍ୱଚାଳନା କଲେ । କିନ୍ତୁ କିଛିଦୂର ଯାଇ ଆଉ ସୁଗମ ମାର୍ଗ ପାଇଲେ ନାହିଁ । ଯେତିକି ଅଗ୍ରସର ହୁଅନ୍ତି ସେତିକି ପଛକୁ ହଟି ଆସନ୍ତି । ନବାଗତ ଅଶ୍ୱାରୋହୀ ଏ ନିରର୍ଥକ ଉଦ୍ୟମରୁ ନିବୃତ୍ତ ହେବେ କି ନାହିଁ ଚିନ୍ତା କରୁଅଛନ୍ତି, ଏମନ୍ତ ସମୟରେ ଦୁର୍ଗର ଊର୍ଦ୍ଧ୍ୱଦେଶରୁ ତାଙ୍କ ବକ୍ଷୋପରି ଗୋଟିଏ ଗୋଲାପ ପୁଷ୍ପ ପତିତ ହେଲା । ସେ ଊର୍ଦ୍ଧ୍ୱକୁ ଅନାଇ ଦେଖିଲେ, ଦୁର୍ଗର ପ୍ରାନ୍ତଭାଗରେ ବିଳାସ କୁମାରୀ ଦଣ୍ଡାୟମାନା, ସେ ତାଙ୍କୁ ଇଙ୍ଗିତ ଦ୍ୱାରା ଶୈଳ ଶୃଙ୍ଗର ଉତ୍ତର ଦିଗ ଦେଖାଇଦେଲେ । ନବାଗତ ଅଶ୍ୱାରୋହୀ ସହସା ଉତ୍ତର ଦିଗକୁ ଆସି ଗୋଟିଏ ସୁଗମ ମାର୍ଗ ଦେଖିଲେ । ମନେ ମନେ ବିଳାସ କୁମାରୀଙ୍କୁ ଧନ୍ୟବାଦ ଦେଇ ସେ ସେହି ପଥରେ ଅଗ୍ରସର ହେଲେ— ଏବଂ ଅଳ୍ପକ୍ଷଣ ମଧ୍ୟରେ ପତାକା ନେଇ ଫେରିଆସିଲେ ।

ବିଜୟପାଳ ପରାଜିତ ହୋଇ ଭୂପତିତ ହେଲେ; ମାତ୍ର ଭାଗ୍ୟକ୍ରମେ ତାଙ୍କର ମୃତ୍ୟୁ ଘଟି ନଥିଲା । ତାଙ୍କୁ ଅଶ୍ୱରୁ ପତିତ ହେବାର ଦେଖି ଦର୍ଶକ ମଣ୍ଡଳୀ ଅଟ୍ଟହାସ୍ୟରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ କରିଦେଲେ ।

—୯—

## ଜୟମାଲ୍ୟ

ରକ୍ତ ପତାକା ହସ୍ତରେ ନେଇ ପ୍ରଫୁଲ୍ଲ ବଦନ ତରୁଣ ସୈନିକ ରମଣୀଗଣ ସମ୍ମୁଖରେ ଦଣ୍ଡାୟମାନ । ରାଜକୁମାରୀ ଅମ୍ବାଳିକାଙ୍କ ହସ୍ତରେ

ଜୟମାଲ୍ୟ ଲମ୍ବିତ । ରାଜମହିଷୀ ଅରୁନ୍ଧତୀ ମାଲ୍ୟ ଉପହାର ଦେବାକୁ ଆଦେଶ ଦେଲେ । ବୀର ଯୁବକ ରାଜମହିଷୀଙ୍କୁ ଅଭିବାଦନ କରି ଜାନୁପାତ ପୂର୍ବକ ଉପବେଶନ କଲେ । ତାଙ୍କର ହର୍ଷପୂରିତ ଅନିମେଷ ନେତ୍ରଦ୍ୱୟ ସେହି କିଶୋରୀ ମୂର୍ତ୍ତି ଉପରେ ପତିତ । ତାଙ୍କ ହୃଦୟ ମନ୍ଦିରରେ ସେହି ଆଶୈଶବ ପ୍ରତାରିତା ଦେବୀପ୍ରତିମାର ଆବିର୍ଭାବ । ଅମ୍ବାଲିକା ରମଣୀମାନଙ୍କ ଅଗ୍ରବର୍ତ୍ତିନୀ ହୋଇ ଦଣ୍ଡାୟମାନ ହୋଇ ରହିଲେ । ପୁଲକରେ ହେଉ ବା ବିସ୍ମୟରେ ହେଉ, ଆଶାରେ ହେଉ ଅଥବା ଲଜ୍ଜାରେ ହେଉ, ଆନନ୍ଦରେ ହେଉ ବା ଅପମାନରେ ହେଉ, ତାଙ୍କ ଶରୀର ରୋମାଞ୍ଚିତ ହେଲା ହୃଦୟ କମ୍ପିତ ହେଲା । ରାଜମହିଷୀ ପୁନରପି ମାଲ୍ୟ ଉପହାର ଦେବାକୁ ଇଙ୍ଗିତ କଲେ । ଅମ୍ବାଲିକା କମ୍ପିତ କରରେ ଜୟମାଲ୍ୟ ଉଠାଉଅଛନ୍ତି, ଏମନ୍ତ ସମୟରେ ଦର୍ଶକମଣ୍ଡଳୀ ମଧ୍ୟରୁ କେହି ଉଚ୍ଚ ସ୍ୱରରେ ପ୍ରତିବାଦ କଲା—ଅପେକ୍ଷା କର, ରାଜକୁମାରୀ ।

ଜଶଲ୍ମୀର ରାଜକୁମାର କେଶରୀ ସିଂହ ସର୍ବ ସମକ୍ଷରେ ଦଣ୍ଡାୟମାନ ହୋଇ କହିଲେ—ରାଜସ୍ଥାନର ରାଜପୁତ ବୀରବଂଶ ସମ୍ଭୂତ ବୀରବୃନ୍ଦ, ରାଜବଂଶ ଶୋଭା ବା ରମଣୀଗଣ, ଆମ୍ଭେମାନେ ଆଜି ଏ ରାଷ୍ଟ୍ର ବିପ୍ଳବରେ, ଏ ଯବନ ଅତ୍ୟାଚାରରେ ଆମ୍ଭମାନଙ୍କର 'ଜାତିକୁଳ ମାନ' ସବୁ ହରାଇଅଛୁଁ । ଆମ୍ଭମାନଙ୍କର ସ୍ୱାଧୀନତା ସଙ୍ଗେ ସଙ୍ଗେ କଣ କ୍ଷତ୍ରିୟ ଜୀବନର ଅମୂଲ୍ୟ ଧନ ଜାତୀୟ ଗୌରବ ସୁଦ୍ଧା ବିଲୁପ୍ତ ହୋଇଅଛି ? ଛି ! ଜଣେ ଅଜ୍ଞାତ କୁଳଶୀଳ, ନୀଚବଂଶ ସମ୍ଭୂତ ସାମାନ୍ୟ ସୈନିକ ଉପରେ ରାଜରାଣୀମାନଙ୍କର ରକ୍ଷାଭାର ସମର୍ପଣ ସାମାନ୍ୟ ଲଜ୍ଜାର କଥା ନୁହେଁ । ରାଜଧିରାଜ ଜୟସିଂହଙ୍କ ଦୁହିତା ଅମ୍ବାଲିକାଙ୍କ ସହ ଜଣେ ଦିନ ଅପରିଚିତ ସୈନିକର ମାଲ୍ୟବିନିମୟ ଦର୍ଶନ ଆମ୍ଭମାନଙ୍କ ପକ୍ଷରେ ସାମାନ୍ୟ ଘୃଣାର ବିଷୟ ନୁହେଁ ।

ବିଜୟପାଳ ଅଗ୍ରସର ହୋଇ କହିଲେ, ଅମ୍ବର ରାଜନନ୍ଦିନୀ ଏହି ତରୁଣ ଯୁବା ସହିତ ମାଲ୍ୟ ବିନିମୟରେ ସମ୍ମତା ହୋଇପାରନ୍ତି ମାତ୍ର ଏଥିରେ ନାରୀ ଜାତିର ନହେଉ ସମ୍ଭ୍ରାନ୍ତବଂଶୀୟ ରାଜପୁତ ବୀରମାନଙ୍କର ଆପତ୍ତି ଥାଇପାରେ ।

କ୍ରୋଧରେ, ଲଜ୍ଜାରେ. ଅଭିମାନରେ ରାଜକୁମାରୀଙ୍କ ମସ୍ତକ ଘୂର୍ଣ୍ଣିତ ହୋଇଗଲା । ମହାମାହିଷୀ ଅରୁନ୍ଧତୀଙ୍କ ଆଡକୁ ସେ ସଗର୍ବରେ ଅନାଇ କହିଲେ । ପୁନର୍ବାର ଦର୍ଶକମଣ୍ଡଳୀରୁ ପ୍ରତିବାଦ ରାଜକୁମାରୀଙ୍କୁ ନିବୃତ୍ତ କରନ୍ତୁ ।

ରାଜମହିଷୀ କିଂକର୍ତ୍ତବ୍ୟ ବିମୂଢ଼ା ହୋଇ ଅମ୍ବାଲିକାଙ୍କୁ ପ୍ରତ୍ୟାବର୍ତ୍ତନ କରିବା ନିମିତ୍ତ ଇଙ୍ଗିତ କଲେ । ରାଜକୁମାରୀଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । ସେ ଯେପରି କିଛି କହିବେ, ଏହିପରି ଇଙ୍ଗିତରେ ତାଙ୍କର ନେତ୍ରଦ୍ୱୟ ବିସ୍ଫାରିତ ହେଲା, ଅଧର କମ୍ପିତ ହେଲା, ମାତ୍ର କଣ୍ଠରୁଦ୍ଧ ହୋଇଗଲା । ବୀର ଯୁବକ ସେତେବେଳଯାଏ ସୁଦ୍ଧା ଜାନୁପାତ ପୂର୍ବକ ଉପବିଷ୍ଟ । ଅମ୍ବାଲିକା ନିରାଶ ହୃଦୟରେ କରୁଣ କଟାକ୍ଷରେ ଥରେ ବୀର ଯୁବକ ଆଡ଼କୁ ଥରେ ଦର୍ଶକମଣ୍ଡଳୀ ପ୍ରତି, ଥରେ ଊର୍ଦ୍ଧ୍ୱକୁ ଦୃଷ୍ଟି ନିକ୍ଷେପ କଲେ । ତଦନନ୍ତର ଗୋଟିଏ ଦୀର୍ଘ ଉଷ୍ଣ ନିଶ୍ୱାସ ପକାଇ କରଧୃତ ଜୟମାଲ୍ୟକୁ ଖଣ୍ଡ ଖଣ୍ଡ କରି ଦୂରକୁ ନିକ୍ଷେପ କରିଦେଲେ ।

ସେତେବେଳେ ବିଜୟପାଳ ଯଶଲ୍ମୀର ରାଜକୁମାରଙ୍କୁ ସମ୍ବୋଧନ କରି 'କହିଲେ, ଦେଖିଲେ କେଶରୀସିଂହ, ନାରୀର ଅଭିଧାନରେ ଏହାକୁ କହନ୍ତି 'ପ୍ରେମ' ।

—୧୦—

## ଦୁରଭିସନ୍ଧି

ଦୁର୍ଗ ରକ୍ଷାର ଭାର ବିଜୟପାଳଙ୍କ ଉପରେ ନ୍ୟସ୍ତ ହେଲା । ବୀର ଯୁବକ ଅନ୍ୟାନ୍ୟ ସାଧାରଣ ସୈନିକଙ୍କ ପରି ତାଙ୍କର ସହାୟତା କରିବେ ବୋଲି ନିଷ୍ପତ୍ତି ହେଲାମାତ୍ରେ ସେ ଏଥିରେ ଅସମ୍ମତ ହେଲେନାହିଁ ବା ନିଜକୁ ଅପମାନିତ ମନେ କଲେନାହିଁ । କାରଣ ସେ ସାମାନ୍ୟ ସୈନିକ ମାତ୍ର, ଏ ସମ୍ମାନିତ ପଦବୀ ତାଙ୍କ ଭାଗ୍ୟରେ ଘଟିବା ଅସମ୍ଭବ ବୋଲି ସେ ପୂର୍ବରୁ ଜାଣିଥିଲେ ।

ପର ଦିବସ ରାଜପୁତ ବୀରଗଣ ବୀରବେଶ ପରିଧାନ କରି ବୀର ପଦରେ ମତ୍ତ ହେଲେ । ଦୁର୍ଗ ପରିତ୍ୟାଗ କରି ଯୁଦ୍ଧଯାତ୍ରା କରିବାର ସମୟ ଉପସ୍ଥିତ, ଦୁର୍ଗାଦାସ ସମବେତ ରାଜନ୍ୟବର୍ଗଙ୍କ ପରି ଦୃଷ୍ଟି ନିକ୍ଷେପ କରି ଦେଖିଲେ, ଯଶଲ୍ମୀର ରାଜକୁମାର କେଶରୀ ସିଂହ ଅନୁପସ୍ଥିତ । କେଶରୀ ସିଂହ ସେତେବେଳେ ଆପଣାର ପ୍ରକୋଷ୍ଠ ମଧ୍ୟରେ ଗଭୀର ଚିନ୍ତାମଗ୍ନ । ଦୁର୍ଗାଦାସଙ୍କ ବଜ୍ର ନିର୍ଘୋଷ ସମ ଆହ୍ୱାନ ବାଣୀ ଶୁଣି ତାଙ୍କର ଚିନ୍ତାଭଙ୍ଗ ହେଲା । ସେ ତଦନନ୍ତର ଅମ୍ବାଳିକାଙ୍କ ଶୟନ ଗୃହ ମଧ୍ୟକୁ ଧୀରେ ଧୀରେ ଗମନ କଲେ । ସେଠାରେ ନିଃଶବ୍ଦରେ ଉପସ୍ଥିତ ହୋଇ ଦେଖିଲେ, ଅମ୍ବାଳିକା ଭୂତଳରେ ଉପବେଶନ କରି ଖଣ୍ଡିଏ ଅସମ୍ପୂର୍ଣ୍ଣ ଚିତ୍ରପଟ ଅଙ୍କନ କରୁଅଛନ୍ତି । ସେତେବେଳଯାଏ ମୁଗ୍ଧା ରାଜକୁମାରୀ କେଶରୀ ସିଂହଙ୍କ ଆଗମନ ବିଷୟ ଅବଗତ ନୁହଁନ୍ତି । କେଶରୀ ସିଂହ ହଠାତ୍ ଡାକିଦେଲେ— ରାଜକୁମାରୀ ! ରାଜକୁମାରୀ ଚମକିପଡ଼ି ଚିତ୍ରପଟ ଭୂତଳରେ ଓଲଟାଇ ରଖିଦେଇ ଦଣ୍ଡାୟମାନ ହେଲେ; କେଶରୀ ସିଂହ ପ୍ରଶ୍ନ କଲେ—ଏପରି ଅନନ୍ୟ ମନରେ କାହାର ଚିତ୍ରପଟ ଅଙ୍କନ କରୁଥିଲ । ସେହି ନୀଚ ବଂଶୋଦ୍ଭବ ଅଜ୍ଞାତ କୁଳଶୀଳ ସୈନିକର ନୁହେଁ ତ ?

ରାଜକୁମାରୀଙ୍କର ଧୈର୍ଯ୍ୟଚ୍ୟୁତି ହେଲା । ଲଜ୍ଜା କ୍ରୋଧ ଓ ଅଭିମାନରେ ପରିଣତ ହେଲା । ସେ ସଗର୍ବରେ କେଶରୀ ସିଂହଙ୍କୁ କହିଲେ—ଆପଣଙ୍କର ଅନୁମାନ ସତ୍ୟ । ବାସ୍ତବରେ ଏ ଚିତ୍ରପଟ ଖଣ୍ଡ ସେହି ବୀର ଯୁବକଙ୍କର । ଅନେକ ଦିନୁଁ ମୁଁ ବହୁ ଯତ୍ନରେ ବହୁ ପରିଶ୍ରମରେ ସ୍ୱହସ୍ତରେ ବୀରମୂର୍ତ୍ତି ଅଙ୍କନ କରୁଅଛି ।

କେଶରୀ ସିଂହ କହିଲେ, ଛି ! ରାଜନନ୍ଦିନୀ ! ରାଜକୁମାରୀ ପକ୍ଷରେ ଜଣେ ସାମାନ୍ୟ ଯୁବକ ପ୍ରତି ଏତାଦୃଶ ଆସକ୍ତି ଶୋଭନୀୟ ନୁହେଁ, ଏହା ଫିଙ୍ଗିଦିଅ ।

ରାଜକୁମାରୀ ଚିତ୍ରପଟ ଖଣ୍ଡି ସ୍ୱୀୟ ବକ୍ଷଦେଶରେ ସ୍ଥାପନ କରି କହିଲେ, ଲୋକେ ଆଦରର ବସ୍ତୁକୁ ଆଦର କରନ୍ତି, ଫିଙ୍ଗି ଦିଅନ୍ତି ନାହିଁ ।

ବର୍ତ୍ତମାନ ବୁଝୁଛି, ସେଦିନ ଜୟମାଲ୍ୟ ଅର୍ପଣ କଲାବେଳେ ଆପଣ ସର୍ବ ସମକ୍ଷରେ ମୋତେ ଅପମାନ କଲେ, ଆଜି ସୁଦ୍ଧା ଆପଣଙ୍କର ଚେଷ୍ଟା—ଏହା କହି ରାଜକୁମାରୀ ସେଠାରୁ ପ୍ରସ୍ଥାନ କରିବାକୁ ଉଦ୍ୟତ ହେଉଛନ୍ତି, ଏମନ୍ତ ସମୟରେ କେଶରୀ ସିଂହ କହିଲେ ରାଜକୁମାରୀ ବୋଧହୁଏ ତୁମ୍ଭର ସ୍ମରଣ ଥିବ, ଯୋଧପୁର ରାଜମହିଷୀଙ୍କର ଚିରପୋଷିତ ଇଚ୍ଛା ଯେ, ତୁମ୍ଭ ସହିତ ମୋହର ଶୁଭ ପରିଣୟ ସଂପର୍କ ହେଉ । ତୁମ୍ଭର କମନୀୟ ଦେବଦୁର୍ଲଭ ମୂର୍ତ୍ତି ଦର୍ଶନ କଲାଦିନୁଁ ମୁଁ ଉନ୍ମତ୍ତ ହୋଇଅଛି ।

ରାଜକୁମାରୀ ଉତ୍ତର କଲେ—ଯୁବରାଜ ଆପଣ ତ ରାଜମହିଷୀଙ୍କଠାରୁ ବାରମ୍ବାର ଶୁଣିଅଛନ୍ତି—ତାଙ୍କୁ ବାରମ୍ବାର ମୁଁ ମଧ୍ୟ ସାନୁନୟ ବିନୟ କରି କହିଅଛି—ଆପଣଙ୍କ ସହିତ ମୋର ପରିଣୟ ଏକାବେଳକେ ଅସମ୍ଭବ ।

କେଶରୀ ସିଂହ—ଶୁଣ ରାଜନନ୍ଦିନୀ ! ମୁଁ ତୁମ୍ଭକୁ ଆଜି ଶେଷଥର ଲାଗି ଜିଜ୍ଞାସା କରିବାକୁ ଆସିଅଛି, ଅଦ୍ୟାବଧି ପଞ୍ଚବିଂଶତ ବର୍ଷ କାଳ ମୁଁ ଯୁଦ୍ଧ ଶତ୍ରୁକ୍ଷୟ ଭିନ୍ନ ଅନ୍ୟଚିନ୍ତା ହୃଦୟରେ ସ୍ଥାନ ଦେଇନାହିଁ । କିନ୍ତୁ ତୁମ୍ଭର କମନୀୟ ମୂର୍ତ୍ତି ମୋର ହୃଦୟକୁ ଏପରି ଅଧିକାର କରିଅଛି ଯେ, ଆଜି ଏ ବୀର ଉତ୍ସବ ବେଳେ ସୁଦ୍ଧା ମୁଁ ତୁମ୍ଭର ପ୍ରେମଭିକାରୀ । ତୁମ୍ଭେ ଯଦି ମୋହର ପ୍ରସ୍ତାବରେ ରାଜି ନହୁଅ ତେବେ ମୋର ପ୍ରତିଜ୍ଞା, ଆଜ ହୁଁ ଏକବର୍ଷ ମଧ୍ୟରେ ତୁମ୍ଭକୁ ଯବନ ଅଙ୍କଶାୟିନୀ କରାଇବି । ଏ ଦେବଭୋଗ୍ୟ ପାରିଜାତ ନନ୍ଦନ କାନନରୁ ନରକରେ ନିକ୍ଷେପ କରିବି ।

ରାଜନନ୍ଦିନୀ ଘୃଣା ଚକ୍ଷୁରେ କେଶରୀ ସିଂହ ମୁଖମଣ୍ଡଳ ନିରୀକ୍ଷଣ କରି କ୍ରୋଧାନ୍ବିତା ହୃଦୟରେ କମ୍ପିତ କଣ୍ଠରେ କହିଲେ, ଧିକ୍ ରାଜକୁମାର । ସ୍ୱର୍ଗରେ ସୁଦ୍ଧା ଯେ ପିଶାଚ ଜନ୍ମ ଗ୍ରହଣ କରେ ତା ମୁଁ ସ୍ୱପ୍ନରେ ହେଲେ ଭାବି ନଥିଲି । ବର୍ତ୍ତମାନ ତୁମ୍ଭର ଦୂରଭିସନ୍ଧି ବୁଝିଲି । ଯାହାହେଉ, ତୁମ୍ଭତୁଲ୍ୟ ରାକ୍ଷସ ସହିତ ମୋର ପରିଣୟ କଳ୍ପନା ମାତ୍ର ।

ଏହା କହି ରାଜକୁମାରୀ ସଦର୍ପରେ ସେଠାରୁ ପ୍ରସ୍ଥାନ କଲେ । ସେହିଦିନ ସନ୍ଧ୍ୟା ସମୟରେ କେଶରୀ ସିଂହଙ୍କୁ ଆଫଜଲ ଖାଁଙ୍କ ଶିବିର ଆଡ଼କୁ ଯାତ୍ରା କରିବାର ଦେଖାଗଲା ।

—୧୧—

## ନିର୍ବାସନ

କଥାରେ କହନ୍ତି, ବାହା ବାଇଦ କୋଶେ, ତୁଣ୍ଡ ବାଇଦ ସହସ୍ର କୋଶ । ଅମ୍ବାଲିକାଙ୍କ ନାମରେ ଚାରିଆଡେ ନାନା ପ୍ରକାର ଅପବାଦ ରଟନା ହେଲା, କେତେ ଲୋକ କେତେ କଥା କହିଲେ, କେହି କେହି ତାଙ୍କୁ ଦେଖି ଆଖି ଠାରଠାରି ହେଲେ, କେହି କେହି ଦେଖେଇ ଶିଖେଇ ନାନା କଥା କହିଲେ, ଅତିରଞ୍ଜନ ମନୁଷ୍ୟ ଜାତିର ସ୍ୱଭାବ, ତହିଁ ସଙ୍ଗେ ପରନିନ୍ଦା କରିବାକୁ ହେଲେ, ଲୋକେ ତିଳକୁ ତାଳ କରି ଆପଣାର କଳ୍ପନା ଶକ୍ତିର, ପାଣ୍ଡିତ୍ୟର ଯଥେଷ୍ଟ ପରିଚୟ ଦିଅନ୍ତି । ଏହି ସାଧାରଣ ନିୟମାନୁସାରେ ଅମ୍ବାଲିକାଙ୍କ ନାମରେ ଅପବାଦ ବେଶ୍ ଚାରିଆଡ଼େ ବାଜିଗଲା ।

ଦିନେ ଅମ୍ବାଳିକା କ୍ଷୁଣ୍ଣ ମନରେ ପ୍ରାଣସଖୀ ବିଳାସ କୁମାରୀ ପାର୍ଶ୍ୱରେ ଉପବେଶନ କରି ଆପଣାର ଦୁଃଖ କାହାଣୀର ଗାଥା ମେଲି ଦେଇଅଛନ୍ତି ।— ଯେବେ ମୋ ଭାଗ୍ୟରେ ବିଧାତା ଏତେ ଯାତନା ଲେଖିଥିଲେ ବୋଲି କିଏ ଜାଣିଥିଲା ? ଏତେ ଅପମାନ ସହି ମୁଦ୍ଧା ଅପମାନର ଶେଷ ନାହିଁ ।

ବିଳାସ କୁମାରୀ ରହସ୍ୟ ଛଳରେ କହିଲେ— ହଁ, ପ୍ରେମ ଫାନ୍ଦରେ ପଡ଼ିଲେ ଏ ସବୁ ସହିବାକୁ ହୁଏ । ଅମ୍ବାଳିକା—ସଖୀ ! ତୁ ମୁଦ୍ଧା ଆଜି ମୋତେ ଥଟ୍ଟା କରୁଛୁ । ହେଉ ସେ ମୋର କପାଳ ଲିଖନ, ସଖୀ ! ତୋ ନିକଟରେ ମୋର ଗୋଟିଏ ମିନତି ଅଛି, ଶୁଣ, ତୋ ସଙ୍ଗେ ଦେଖା ହେବାଦିନୁ ତୋତେ ପ୍ରାଣର ଭଗିନୀ ବୋଲି ସ୍ନେହ କରେ । ଆଜି ଏ ଦୁର୍ଦ୍ଦିନରେ ତୁ ମୋର ପ୍ରାର୍ଥନା ଅବଶ୍ୟ ପୂରଣ କରିବୁ । ତୁ ସେହି ବୀର ଯୁବକଙ୍କ ସହିତ ସାକ୍ଷାତ କରି ତାଙ୍କୁ କହିବୁ—ରାଜକୁମାରୀଙ୍କୁ ଥରେ ମାତ୍ର ସାକ୍ଷାତ କରି ଅନ୍ୟତ୍ର ପ୍ରସ୍ଥାନ କର । ସଖୀ ! କହିବାକୁ ଲଜ୍ଜମାଡ଼େ—ଥରେ ଏ ଜୀବନରେ ଶେଷବାର ଲାଗି ଦେଖା-ହେଲେ ବିଦାୟ କାଳର ହୃଦୟ ସର୍ବସ୍ୱଙ୍କୁ ହୃଦୟର ସର୍ବସ୍ୱ ଉପହାର ଦେଇ ବିଦାୟ ଦିଅନ୍ତି—ଏହା କହୁଁ କହୁଁ ଅମ୍ବାଳିକାଙ୍କ କଣ୍ଠରୁଦ୍ଧ ହୋଇଗଲା । ପଙ୍କଜ ନୟନରୁ ଦୁଇଧାର ଉଷ୍ଣ ଲୋତକ ପଡ଼ିଗଲା ।

ବିଳାସକୁମାରୀ—ରଜନନ୍ଦିନୀ ! ତାଙ୍କୁ ବିଦାୟ ଦେଇ ନିଶ୍ଚିନ୍ତ ହୋଇ ପାରିବୁ ତ ?

ଅମ୍ବାଳିକା—ବିସ୍ମୃତ ହେବି କାହାକୁ ?—ମୋର ହୃଦୟର ଅମୂଲ୍ୟନିଧି, ପ୍ରାଣର ପ୍ରାଣକୁ ମୁଁ ବିସ୍ମୃତ ହେଲେ, ମୋର ଏ ଜୀବନ ରହିବ ତ ? ସଖୀ ! ଆଜିକି ଦଶବର୍ଷ ତଳର କଥା, ମା' ମୃତ୍ୟୁ ପୂର୍ବରୁ ଯେଉଁଦିନ ମିବାରର ମହାରାଣାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଯାଇଥିଲେ, ସେହି ବନ୍ଦରର ସମୁଦ୍ର ତୀରରେ କିଂଶୁକ ତରୁତଳେ ତାଙ୍କୁ ଦେଖିଥିଲି— ମୋର ଥରେମାତ୍ର ଦେଖା କି କୁହୁକ ବଳରେ ଏ ମନ ପ୍ରାଣ ଯେ କିଣିନେଲେ ତାହା ତାଙ୍କୁ ଜଣା ସଖୀ । ସେତେବେଳେ ମୁଁ ବାଳିକା ମାତ୍ର । ସେତେବେଳେ ପ୍ରେମ କଣ ମୋତେ ସମ୍ପୂର୍ଣ୍ଣ ଅଜଣା କିନ୍ତୁ ସେହିଦିନୁ ତାଙ୍କର ମୋହନ ମୂର୍ତ୍ତି ମୋର ନେତ୍ରପିତୁଳା ହୋଇଅଛି । ସେହିଦିନୁ ତାଙ୍କର ଲାବଣ୍ୟ ପ୍ରତିମା ହୃଦୟ ସିଂହାସନରେ ପୂଜା କରୁଅଛି । ମୋତେ ଲୋକେ ଘୃଣା କରନ୍ତୁ, ଅପମାନ ଦିଅନ୍ତୁ, କିନ୍ତୁ ତାଙ୍କର ନାମ, ତାଙ୍କର ପ୍ରେମ ନିରନ୍ତର ମୋର ମହାମନ୍ତ୍ର ହୋଇଅଛି । କହ ସଖୀ, ଏ ପିଣ୍ଡରେ ପ୍ରାଣ ଥାଉଁ ଥାଉଁ କିପରି ତାଙ୍କୁ ଭୁଲିପାରିବି ?

X X X X

ଅମ୍ବାଳିକାଙ୍କ ପୁନଃ ପୁନଃ ଅନୁରୋଧରେ ବିଳାସ କୁମାରୀ ସେହି ବୀର ଯୁବାଙ୍କୁ ରାଜକୁମାରୀଙ୍କ ଅଭିପ୍ରାୟ ଜଣାଇଲେ । ବୀର ଯୁବକ ସମ୍ମତ ହେଲେ— ନିଶାବସାନରେ ଗିରିଦୁର୍ଗ ପରିତ୍ୟାଗ କରି ଚାଲିଯିବେ । ସେହି ନିଶାଅରେ ଦୁର୍ଗର ପାର୍ଶ୍ୱ ଦେଶରେ, ଅସ୍ତମିତ ଶୁକ୍ରତାରାର କ୍ଷୀଣାଲୋକରେ ଖଣ୍ଡିଏ ପ୍ରସ୍ତର ଉପରେ ଅମ୍ବାଳିକା ଓ ବିଳାସ କୁମାରୀ ଦଣ୍ଡାୟମାନା । ବୀର ଯୁବକ ସେମାନଙ୍କ ପାର୍ଶ୍ୱଦେଶରେ ଯୋଡ଼ ହସ୍ତରେ ଦଣ୍ଡାୟମାନ ହୋଇ କହିଲେ—

ରାଜକୁମାରୀ ! ଆପଣଙ୍କ ଆଦେଶ ମତେ ମୁଁ ଗିରିଦୁର୍ଗ ପରିତ୍ୟାଗ କରି ବାହାରିଲି, ଆପଣ ମୋ ପ୍ରତି କୌଣସି ବିରକ୍ତି ବା କ୍ରୁଧ ହୋଇ ଏ ଆଦେଶ ଦେଇଥିଲେ, ମୋତେ କ୍ଷମା କରିବେ, ମାତ୍ର ଆପଣଙ୍କ ଆଦେଶ ମୋହର ଅବଶ୍ୟ ପାଳନୀୟ ।

ରାଜକୁମାରୀ କୌଣସି ଉତ୍ତର ଦେଲେ ନାହିଁ । ମାତ୍ର ଅନ୍ଧକାର ନ ହୋଇଥିଲେ ଯୁବକ ଦେଖିଥାନ୍ତେ, ତାଙ୍କ ଗଣ୍ଡ ଦେଶ ସେତେବେଳେ ଲୋତକ-ପ୍ଲାବିତ । ଯୁବକ ପୁନର୍ବାର ପ୍ରଶ୍ନ କଲେ—ମୋତେ କଣ ବର୍ତ୍ତମାନ ଏ ସ୍ଥାନ ପରିତ୍ୟାଗ କରି ଯିବାକୁ ହେବ ?

ରାଜକୁମାରୀ—ଯେତେ ଶୀଘ୍ର ପାରନ୍ତି, ବିଳମ୍ବର ଆବଶ୍ୟକତା ନାହିଁ ।

ଯୁବକ—ତେବେ ଆଉ କେତେଦିନ ପରେ ଆପଣଙ୍କର ସାକ୍ଷାତ ଲାଭ କରିବି ?

ରାଜକୁମାରୀ—ମୋର ସାକ୍ଷାତ ଲାଭରେ ଆପଣଙ୍କର ପ୍ରୟୋଜନ କଣ ?

ବିଳାସ କୁମାରୀ ହଠାତ୍ କହି ପକାଇଲେ—ସଂଗ୍ରାମ ଶେଷରେ ରାଜକୁମାରୀ ତୁମ୍ଭଙ୍କୁ ଯବନ ବିଜୟର ଉପହାର ସ୍ୱରୂପ ବରମାଲ୍ୟ ଉପହାର ଦେବେ ।

ଯୁବକ ପ୍ରସ୍ଥାନୋଦ୍ୟତ ହେଉଥିଲେ, ରାଜକୁମାରୀ ପୁନର୍ବାର କ୍ଷୀଣ କଣ୍ଠରେ କହିଲେ 'ବୀରବର, ତୁମ୍ଭେ ମୋତେ ଦିନେ ଶତ୍ରୁ ହସ୍ତରୁ ରକ୍ଷା କରିବା ଲାଗି ପ୍ରାଣ ବିସର୍ଜ୍ଜନ କରିବାକୁ ପ୍ରସ୍ତୁତ ହୋଇଥିଲ । ତାହାର ପୁରସ୍କାର ସ୍ୱରୂପ ଏହି ହୀରକାଙ୍ଗୁରୀୟଟି ଉପହାର ଦେଲି । ବକ୍ତବ୍ୟ ଶେଷ ହେଉ ନହେଉଣୁ ରାଜକୁମାରୀ ବିଳାସକୁମାରୀର ହସ୍ତ ଧାରଣ କରି ଗୃହାଭି-ମୁଖରେ ପ୍ରସ୍ଥାନ କଲେ । ବୀର ଯୁବକ ମଧ୍ୟ ବିପରୀତ ଦିଗରେ ଗମନ କଲେ । ଉଭୟେ ମଧ୍ୟେ ମଧ୍ୟେ ବକ୍ର ଦୃଷ୍ଟି ନିକ୍ଷେପ କରି ପରସ୍ପରକୁ ଅନାଉ ଥାନ୍ତି ।

—୧୩—

## ଦୁରଭିସନ୍ଧିର ପରିଣାମ

ବୀର ଯୁବା ଦୁର୍ଗରୁ ନିଷ୍କ୍ରାନ୍ତ ହୋଇ ଫକୀରଙ୍କ ମସଜିଦ୍‌ରେ ଅବସ୍ଥାନ କରୁଥିଲେ । କୌଣସି ସମୟରେ ଯବନମାନଙ୍କ ସହିତ ଯୁଦ୍ଧର ସମ୍ବାଦ ପହଞ୍ଚିଲେ ଯୁଦ୍ଧରେ ଯୋଗ ଦିଅନ୍ତି । ଦୁଇମାସ ଅତୀତ ହେଲା ପରେ ଦିନେ ସନ୍ଧ୍ୟା ସମୟରେ ଅମ୍ବାଳିକା ଓ ବିଳାସକୁମାରୀ ଦୁର୍ଗ ସମୀପସ୍ଥ ନଦୀ ତୀରରେ ଦଣ୍ଡାୟମାନ ହୋଇ କଥୋପକଥନ କରୁଅଛନ୍ତି ।

ଅମ୍ବାଳିକା—ସଖୀ, ଦୟା କରି କହ, ଆମ୍ଭେମାନେ କେଉଁଦିନ ଏଠାରୁ ବୃନ୍ଦାବନ ଯିବା । ବହୁ କଷ୍ଟରେ ରାଣୀଙ୍କ ସମ୍ମତି କରାଇଲି, ତେବେହେଲେ ତୁ ଅନର୍ଥକ ବିଳମ୍ବ କରୁଛୁ । ତୋତେ ମିନତି କରୁଛି—ଶୀଘ୍ର—ଏଠାରୁ ଯିବା ଚାଲ ।

ବିଳାସକୁମାରୀ—ଆଉ କିଛି ଦିନ ଅପେକ୍ଷା କର । ଯବନ ଯୁଦ୍ଧରେ ପରିଣାମ କଣ ହେବ ଦେଖାଯାଉ ?

ଅମ୍ବାଳିକା—ତୁ ତ ଆଉ ଯୁଦ୍ଧ କରିବୁ ନାହିଁ, ତୋର ଏଠାରେ ରହି ଲାଭ କଣ ?

ବିଳାସ କୁମାରୀ—ତୁ କଣ ଭାବୁଛୁ, ବୃନ୍ଦାବନ ଯାଇ ସନ୍ନ୍ୟାସିନୀ ହେଲେ ତୋର ସବୁ ଦୁଃଖ ପାସୋରଯିବ ?

ଅମ୍ବାଳିକା—ସଖୀ ! ଶୁଣିଛି, ସେ ପବିତ୍ର ଧାମରେ ରାଧାମାଧବଙ୍କ ପବିତ୍ର ପ୍ରେମ ପ୍ରବାହ ବହୁଅଛି । ସେଠାରେ ଶୋକ ତାପ ନାହିଁ । ସେଠାରେ ନରନାରୀ ଆତ୍ମ ବିସ୍ମୃତ ହୁଅନ୍ତି ।

ବିଳାସକୁମାରୀ—ରାଜନନ୍ଦିନୀ, ତୁ ବ୍ୟସ୍ତ ହୁଅନା, ତୋର ସବୁ ଦୁଃଖ ଘୁଞ୍ଚିଯିବ ।

ଏମନ୍ତ ସମୟରେ ଅକସ୍ମାତ ଦୁର୍ଗ ମଧ୍ୟରେ କୋଳାହଳ ଶୁଭିଲା, ସେନାଗଣଙ୍କର ଅସ୍ତ୍ରାଳନ ଓ ନରନାରୀମାନଙ୍କର କ୍ରନ୍ଦନ ସ୍ୱର ସଙ୍ଗେ ସଙ୍ଗେ ଅସିର ଝନ୍‌ଝନ୍ ଶବ୍ଦ ଉଥିତ ହେଲା । ବିଳାସ କୁମାରୀ ଅନୁମାନ କଲେ—ଯବନ ସେନା ଦୁର୍ଗ ଆକ୍ରମଣ କରିଅଛନ୍ତି । ସେ ରାଜକୁମାରୀଙ୍କୁ ଦୁର୍ଗ ମଧ୍ୟକୁ ଯିବାକୁ ଅନୁରୋଧ କଲା ମାତ୍ର ରାଜକୁମାରୀ କହିଲେ, ଏ ଦୁଃସାହସରେ ପ୍ରୟୋଜନ କଣ ? ଆପେ ଆପେ ଯାଇଁ ଏ ପ୍ରଚଣ୍ଡ ଅଗ୍ନିରେ ପ୍ରବେଶ କଲେ ଆମ୍ଭମାନଙ୍କୁ ରକ୍ଷା କରିବ କିଏ ?

ବିଳାସକୁମାରୀ ଆପଣାର ପରିଧେୟ ବସ୍ତ୍ର ମଧ୍ୟରୁ ଖଣ୍ଡିଏ ଶାଣିତ ଛୁରିକା ବାହାର କରି ତାଙ୍କ ଅଙ୍ଗକୁ ବତାଇ ଦେଇ କହିଲେ—ଏହି ଶାଣିତ ଅସ୍ତ୍ର ବୀର ନାରୀର ସମ୍ବଳ ।

ସେମାନେ ଦେଖିଲେ, ଦୁର୍ଗର ସୈନ୍ୟମାନେ କୋଳାହଳ କରି ବିଶୃଙ୍ଖଳ ଭାବରେ ଚାରିଆଡେ ଧାବିତ ହେଉଅଛନ୍ତି । ଦୁର୍ଗର ଦକ୍ଷିଣ ପାର୍ଶ୍ୱରେ ବିଜୟପାଳ ଶୃଙ୍ଖଳ ବଦ୍ଧ ଓ ଯବନ ପ୍ରହରି ବେଷ୍ଟିତ ହୋଇ ଦଣ୍ଡାୟମାନ ।

ବାସ୍ତବରେ ବିଜୟପାଳ ବିନା ଯୁଦ୍ଧରେ ବନ୍ଦୀ ହୋଇଥିଲେ । ଅକସ୍ମାତ୍ ଯବନ ସେନା ବିନା ଯୁଦ୍ଧରେ ଦୁର୍ଗ ଆକ୍ରମଣ କରିବେ, ଏହା କାହାରିକୁ ଜଣାନଥିଲା । ସୈନ୍ୟମାନେ ସମସ୍ତେ ନିଶ୍ଚିନ୍ତ ଓ ନିଶ୍ଚେଷ୍ଟ ହୋଇ ରହିଥିଲେ । ବିଜୟପାଳ ମଧ୍ୟ ପୂର୍ଣ୍ଣ ମାତ୍ରାରେ ଅହିଫେନ ସେବନ କରି ଦୁର୍ଗର ଦ୍ୱାର ଦେଶରେ ନିଦାଘ ପ୍ରଦୋଷର ଶୀତଳ ସମୀରଣ ସେବନ କରୁ କରୁ ପଲ୍ୟଙ୍କୋପରି ତନ୍ଦ୍ରାଭିଭୂତ ହୋଇଥିଲେ । ଗୁରିଜଣ ଯବନ ସୈନିକ ନିଃଶବ୍ଦରେ ତାଙ୍କ ଶଯ୍ୟା ପାର୍ଶ୍ୱରେ ଉପସ୍ଥିତ ହୋଇ ତାଙ୍କ ତରବାରୀ ଘେନିଗଲେ ଏବଂ ତାଙ୍କୁ ବନ୍ଦୀ କଲେ । ନାରୀଗଣଙ୍କର କୋଳାହଳ ଓ ଆର୍ତ୍ତନାଦରେ ହଠାତ୍ ତାଙ୍କର ନିଦ୍ରା ଭାଙ୍ଗିଗଲା । ସେ ଚମକି ପଡ଼ି ଦେଖିଲେ ଯେ; ସେ ଶତ୍ରୁ ହସ୍ତରେ ବନ୍ଦୀ ।

ଅମ୍ବାଳିକା କହିଲେ—ସଖୀ, ଏଠାରେ ଅଧିକ ସମୟ ବିଳମ୍ବ କରିବା ଉଚିତ୍ ନୁହେଁ । ହେଇ ଦେଖ, ଏ ଆଡକୁ ଜଣେ ଯବନ ସୈନିକ ଆସୁଅଛି ।

ବିଳାସକୁମାରୀ—ଯବନ ନୁହେଁ ସଖୀ, ଯବନ ବେଶୀ ହିନ୍ଦୁ ।

ଯବନ ବେଶୀ ହିନ୍ଦୁ ସେମାନଙ୍କ ନିକଟରେ ଉପସ୍ଥିତ ହେଲା କ୍ରୋଧରେ, ଭୟରେ, ବିସ୍ମୟରେ ଅମ୍ବାଳିକାଙ୍କ ଗାତ୍ର କମ୍ପ ହେଲା । ସେ ବିସ୍ମିତ ହୋଇ ଦେଖିଲେ । ସେହି ଯବନ ବେଶୀ ହିନ୍ଦୁ ଅନ୍ୟ କେହି ନୁହେଁ—ଯଶଲମୀର ରାଜକୁମାର କେଶରୀ ସିଂହ । ବର୍ତ୍ତମାନ ଯୁଦ୍ଧ, ସମୟ ଅଛି, ବର୍ତ୍ତମାନ ସୁଦ୍ଧା ମୋର ପ୍ରସ୍ତାବରେ ସମ୍ମତ ହେଲେ ତୁମ୍ଭଙ୍କୁ ଯବନ ହସ୍ତରୁ ରକ୍ଷା କରି ମୋର ଦୁରଭିସନ୍ଧି ପରିତ୍ୟାଗ କରିବି ।

ଅମ୍ବାଳିକା—ବର୍ତ୍ତମାନ ସୁଦ୍ଧା ଆପଣଙ୍କ ହୃଦୟରେ ସେହି ଦୁରାଶା ପୋଷଣ କରିଅଛନ୍ତି ? ଅମ୍ବର ରାଜକୁମାରୀ ଆପଣଙ୍କ ପରି ପିଶାଚ ସହ ପରିଣୟ ?

କେଶରୀ ସିଂହ—ତେବେ ମୋର ପ୍ରତିଜ୍ଞା ପୂରଣ କରେ । ହାସେନ୍ ଅଲି, ପାର ବକ୍ସା ତୁମ୍ଭେମାନେ ଯେଉଁ ରମଣୀର ଅନ୍ୱେଷଣ କରୁଅଛ, ସେ ଏହି । ବାହୁକମାନଙ୍କୁ ଏହିଠାକୁ ଶିବିକା ଘେନି ଆସିବାକୁ ଆଦେଶ କର ।

ବହୁ ସଂଖ୍ୟକ ମୁସଲମାନ ସେନା ରାଜକୁମାରୀଙ୍କୁ ବେଷ୍ଟନ କଲେ, କେଶରୀ ସିଂହ ସଗର୍ବରେ କହିଲେ, ଏବେ ମୋର ପ୍ରତିଜ୍ଞା ମୁଁ ପୂରଣ କଲି । ଏ ରମଣୀ ଯେପରି ପଳାୟନ ନକରେ, ତାର ଭାର ତୁମ୍ଭମାନଙ୍କ ଉପରେ । ଏବେ ମୁଁ ଯାଇଁ ନବାବ ସାହେବଙ୍କୁ ଧନ୍ୟବାଦ ଦିଏଁ ।

—୧୩—

# ବିଳାସ କୁମାରୀଙ୍କ ଉଦ୍ୟମ

ପାଠକମାନଙ୍କର ସ୍ମରଣ ଥିବ । ଅମ୍ବାଳିକା ଓ ବିଳାସକୁମାରୀ ଉଭୟେ ଯବନ ସେନା ସନ୍ନିଧାନ ହୋଇଥିଲେ, ମାତ୍ର କେଶରୀ ସିଂହଙ୍କ ପ୍ରତିଜ୍ଞା ଅମ୍ବାଳିକାକୁ ଯବନ ଅଙ୍କଶାୟୀ କରାଇବେ, ବିଳାସକୁମାରୀକୁ ନୁହେଁ । ତଥାପି ସେଦିନ ବିଳାସକୁମାରୀକୁ ସେ ବନ୍ଦୀ କରିଥିଲେ ତାଙ୍କର ପ୍ରତିଜ୍ଞା ପୂରଣରେ ବାଧା ଘଟିନଥାନ୍ତା, ମାତ୍ର ସେତେବେଳେ ବିଳାସକୁମାରୀଠାରୁ କୌଣସି ଭାବୀ ଅନିଷ୍ଟର ଆଶଙ୍କା ନକରି ସେ ତାହାକୁ ମୁକ୍ତି ଦେଇଥିଲେ । ବିଳାସକୁମାରୀ ମଧ୍ୟ ସାଧାରଣ ରମଣୀ ନୁହେଁ—ସେ ଶୋକରେ ବା ବିପଦରେ ଅଧୀର ହୋଇ ବାହୁନୀ କାନ୍ଦିବାର ସ୍ତ୍ରୀ ନୁହେଁ । ସେ ପଥ ମଧ୍ୟରେ ଅମ୍ବାଳିକାଙ୍କୁ ଉଦ୍ଧାର କରିବ ବୋଲି ଇଙ୍ଗିତ ଦ୍ୱାରା ଜଣାଇ ଦେଇ ପ୍ରସ୍ଥାନ କଲା ।

ଦୁର୍ଗରେ ସେତେବେଳେ ଘୋର ଆତଙ୍କ ଉପସ୍ଥିତ । ବିଳାସକୁମାରୀ ଯେତେବେଳେ ଦୁର୍ଗ ମଧ୍ୟରେ ପ୍ରବେଶ କରି ବୀର ବେଶ ପରିଧାନ କଲା, ତାହାକୁ କେହି ଦେଖିଲା କି ନାହିଁ, ବୋଲାଯାଇ ନପାରେ । ଯାହାହେଉ ସେ ଅଶ୍ୱଶାଳାରୁ ଗୋଟିଏ ଦ୍ରୁତଗାମୀ ଅଶ୍ୱ ଆରୋହଣ କରି ଦୁର୍ଗରୁ ବହିର୍ଗତ ହେଲା । ଜୟ ଦ୍ୱାର ଅଗ୍ରସର ହୋଇ ଦେଖିଲା—ସେହି ପାର୍ବତ୍ୟ ପଥ ରକ୍ତାକ୍ତ ଓ ସ୍ଥାନେ ସ୍ଥାନେ ଯବନ ମୁଣ୍ଡମାଳ ଓ ମୃତ ଦେହ । କ୍ରମେ ଯେତେଦୂର

ଅଗ୍ରସର ହେଲା, ସେ ସୈନ୍ୟଙ୍କ ମୃତ ଦେହ ତାହାର ଅଶ୍ୱର ଗତିରୋଧ କଲା ଯେତେ ଯବନ ବୀର ବଧ କଲା କିଏ । ଅଉ ଏ କି ଆଶ୍ଚର୍ଯ୍ୟ ସେହି ପ୍ରାଣହୀନ ନର ଦେହ ଗିର ମଧ୍ୟ ସ୍ଥଳରେ ସେହି ଦେବକାନ୍ତି ଫକୀର । ବିଳାସକୁମାରୀ ସନ୍ଦିଗ୍ଧ ପ୍ରାୟ କ୍ଷଣ କାଳ ନିରୀକ୍ଷଣ କରି ଦେଖିଲେ—ଫକୀର ଗୋଟିଏ ଅଚେତନ ଦେହ କ୍ରୋଡ଼ରେ ଘେନି ଔଷଧ ସେବନ କରାଉଅଛନ୍ତି । ଅଳ୍ପକ୍ଷଣ ପରେ ସେହି ସ୍ପନ୍ଦନହୀନ ଦେହ ଚୈତନ୍ୟ ଲାଭ କରି ନୟନ ଉନ୍ମୀଳନ କଲା । ଫକୀର ଉଚ୍ଚ କଣ୍ଠରେ କହିଲେ ଉଠ ହେ, ତୁମ୍ଭେ ଜୀବିତ ଓ ଜାଗ୍ରତ । ସେହି ସୁପ୍ତୋତ୍ଥିତ ଦେହ ଚେତନା ଲାଭ କରି ଦଣ୍ଡାୟମାନ । ଅହୁରି ବିସ୍ମୟଜନକ ଏ ପୁଣି ସେହି ବୀର ଯୁବକ—

ଯୁବକ କହିଲେ—ଦେବ, ଏ ଦୀନର ଜୀବନ ଯବନ ଯାବନ ଯୁଦ୍ଧରେ ଶେଷ ହୋଇଅଛି । ଜାଣିପାରି ଆପଣ ଆସି ମୋତେ ଜୀବଦାନ ଦେଇ ଅଛନ୍ତି ।

ଫକୀର—ମୃତକୁ ଜୀବନ ଦେବା ମନୁଷ୍ୟର କି ସାଧ୍ୟ ? ମୁଁ ତୁମ୍ଭର ଶୁଶ୍ରୂଷା କରି ତୁମ୍ଭଙ୍କୁ ଗାଢ଼ ନିଦରୁ ଉଠାଇଛି ମାତ୍ର । ତୁମ୍ଭେ ଦୁର୍ଗ ଆକ୍ରମଣର ସମ୍ବାଦ ପାଇ ମୋର ନିଷେଧ ସତ୍ତ୍ୱେ ଯେତେବେଳେ ଯୁଦ୍ଧ କରିବାକୁ ପ୍ରସ୍ଥାନ କଲ ସେତେବେଳେ ମୋ ମନରେ ନାନା ପ୍ରକାର ସନ୍ଦେହ ଉପସ୍ଥିତ ହେଲା । ତେଣୁ ତୁମ୍ଭଙ୍କୁ ଅନୁସରଣ କରୁ କରୁ ଦେଖିଲି—ଏଠାରେ ମୃତ ଦେହ ମଧ୍ୟରେ ତୁମ୍ଭେ ଅଚେତନ ପ୍ରାୟ ପତିତ ହୋଇଅଛ ।

ଯୁବକ—ଯଦି ଦୟା କରି ଏ ଅକିଞ୍ଚିତକର ଜୀବନ ରକ୍ଷା କଲେ, ତେବେ ମୋ ଦ୍ୱାରା କି ଉଦ୍ଦେଶ୍ୟ ସାଧିତ ହୋଇପାରେ, କହନ୍ତୁ । ଶୀଘ୍ର କହନ୍ତୁ । ଦସ୍ୟୁମାନେ ଶିବିକା ଘେନି କେଉଁ ଆଡ଼କୁ ଗଲେ ।

ଫକୀର—ମୁଁ ଶିବିକା ଦେଖିନାହିଁ । ବିଳାସକୁମାରୀ ହଠାତ୍ ଅଗ୍ରସର ହୋଇ କହିଲା—ମୁଁ କହିପାରେ—ରକ୍ଷସମାନେ କେଉଁ ଆଡ଼କୁ ଅମ୍ବାଳିକାକୁ ଘେନି ଯାଇଅଛନ୍ତି, ତାହା ମୁଁ ପିତୃପୁର ମହାଯୋଗୀଙ୍କ ଆଶୀର୍ବାଦରେ କହିପାରେ । ବୀର ଯୁବା ଉଲ୍ଲାସରେ ଓ ବିସ୍ମୟରେ ବିଳାସକୁମାରୀର ମୁଖ-ମଣ୍ଡଳ ନିରୀକ୍ଷଣ କରି କହିଲେ—ତେବେ ଚାଲ ଦେବୀ । ମୋତେ ଆଉ ଥରେ ଯବନ ସମରରେ ପଥ ପ୍ରଦର୍ଶନ କର ।

—୧୪—

## ପ୍ରାୟଶ୍ଚିତ୍ତ

ରଜନୀ ପ୍ରଭାତ ହେଲା ଶିବିକା ମୁସଲମାନ ଶିବିର ସମ୍ମୁଖରେ ଉପସ୍ଥିତ । ଅମ୍ବାଳିକା ମହା ଚିନ୍ତାରେ ଅଧୀର । ବିଳାସକୁମାରୀ ପଥ ମଧ୍ୟରେ ଉଦ୍ଧାର କରିବାର ଆଶା ଦେଇ କେଉଁଆଡ଼େ ଗଲା । ତେବେ ପ୍ରାଣ ବିସର୍ଜନ ଭିନ୍ନ ଉପାୟ ନାହିଁ । ବିଳାସକୁମାରୀ ପ୍ରଦତ୍ତ ଛୁରିକା ହାତରେ ଘେନି ଉର୍ଦ୍ଧ୍ୱ ନୟନରେ କହିଲେ ।—ପ୍ରଭୁ ବିପଦର ସଖା, ସତୀ ନାରୀର ତୁମ୍ଭେ ଚିର ସହାୟ । ଆଜି ମୋତେ ଏ ବିପଦରୁ ତୁମ୍ଭ ବିନୁ କିଏ ଉଦ୍ଧାର କରିବ ?

ଦ୍ରୌପଦୀର ଲଜ୍ଜା ନିବାରକ । ଆଜି ମୋର ଲଜ୍ଜା ନିବାରଣ କର । ନୋହିଲେ, ତୁମ୍ଭଙ୍କୁ ସାକ୍ଷ କରି ଏ ଜୀବନ ବିସର୍ଜନ କରିବି । ଲୋକେ କହନ୍ତି ଆତ୍ମହତ୍ୟା ମହାପାପ—କିନ୍ତୁ ନାଥ, ଏ କ୍ଷେତ୍ରରେ ଆତ୍ମହତ୍ୟା ମୋର ଏକମାତ୍ର ପନ୍ଥା ।

ଏହି ସମୟରେ ହଠାତ୍ ଶିବିକାର ଦ୍ୱାର ଉନ୍ମୁକ୍ତ ହେଲା । ଅମ୍ବାଲିକା ଚମକି ପଡ଼ି ଦେଖିଲେ, କେଶରୀ ସିଂହ ଓ ତତ୍ପାର୍ଶ୍ୱରେ ଜଣେ ବିକଟାକାର ମୁସଲମାନ ଦଣ୍ଡାୟମାନ । କେଶରୀ ସିଂହ ଗର୍ଜନକରି କହିଲେ—ସେନାପତି, ପତେ କଣ ବିଧାତା ଏ ଦେବ ଦୁର୍ଲଭ ପାରିଜାତକୁ ନରକ ଭୋଗ୍ୟ କରି ସୃଷ୍ଟି କରିଥିଲା ?

ସେନାପତି ଆଫଜଲ ଖାଁ କେଶରୀ ସିଂହଙ୍କ ମନ୍ତବ୍ୟର ଯଥାର୍ଥ ମର୍ମ ବୁଝି ନପାରି କହିଲେ । ଯଥାର୍ଥରେ ମୁଁ ଆପଣଙ୍କ ନିକଟରେ ଚିରଋଣୀ । ମୁଁ ବାଦସାହଙ୍କ ଦରବାରରେ ଆପଣଙ୍କର ପୁରସ୍କାର ବ୍ୟବସ୍ଥା କରିବି ।

କେଶରୀ ସିଂହ—ସେନାପତି ! ମୋତେ ଏଠାରେ ବର୍ତ୍ତମାନ ପୁରସ୍କାର ଦିଅନ୍ତୁ । ଆପଣଙ୍କର ଶିବିରରେ ଆଉ କେତେ ସେନା ଅଛନ୍ତି ।

ସେନାପତି—ଦୁଇଶତ ମାତ୍ର । ଅବଶିଷ୍ଟ ସେନାଗଣ ଆପଣଙ୍କ ସହିତ ଗିରି ଦୁର୍ଗ ଆକ୍ରମଣାର୍ଥେ ଯାଇଥିଲେ । ସେମାନେ ବର୍ତ୍ତମାନ ସୁଦ୍ଧା ଫେରି ନାହାନ୍ତି । ଆପଣ ଏକଥା କାହିଁକି ପ୍ରଶ୍ନ କଲେ ?

କେଶରୀ ହଠାତ୍ ତରବାରୀ କୋଷମୁକ୍ତ କରି ଦକ୍ଷିଣ ହସ୍ତରେ ବଜ୍ର ମୁଷ୍ଟିରେ ଧାରଣ ପୂର୍ବକ ଅପର ହସ୍ତରେ ଆଫଜଲ ଖାଁଙ୍କ ଗ୍ରୀବା ଆକର୍ଷଣ କରି କ୍ଷୁଧାର୍ତ୍ତ ସିଂହ ତୁଲ୍ୟ ଗର୍ଜନ କରି କହିଲେ—ଦେଖରେ ଭୀରୁ ସୈନ୍ୟଗଣ, ତୁମ୍ଭମାନଙ୍କ ପରାକ୍ରମ ଥିଲେ—ସେନାପତିଙ୍କୁ ରକ୍ଷା କର, ନଚେତ୍ ଏ କେଶରୀ ହସ୍ତରେ ସେ ଶୃଗାଳର ବଧ ଅନିବାର୍ଯ୍ୟ ।

କେଶରୀ ସିଂହଙ୍କୁ ଆକ୍ରମଣ କରିବା ଲାଗି ଚତୁର୍ଦ୍ଦିଗରୁ ଯବନ ସେନା ଧାବିତ ହେଲେ । ତହୁଁ ସେ ଆଫଜଲ ଖାଁଙ୍କୁ ପରିତ୍ୟାଗ କରି କହିଲେ, ସୁରସୁନ୍ଦରୀ ଅମ୍ବାଲିକେ ! ଯେଉଁ ଭୀଷଣ ଅନୁତାପାନଳରେ ଏ ହୃଦୟ ଦଗ୍ଧୀଭୂତ ହେଉଅଛି ; ସେଥିର ଶାନ୍ତି ଲାଗି ମୋର ପୈଶାଚିକ ବ୍ରତର ପ୍ରାୟଶ୍ଚିତ୍ତ କରୁଅଛି । ଦେଖ ଦୁଇଶତ ମୁସଲମାନ ସେନାଙ୍କ ଦୁଇଶତ ତରବାରୀ ମଧ୍ୟରେ ଜଣେ ରାଜପୁତ ବୀରର ଏକମାତ୍ର ତରବାରୀ ଭୀମ-ବଳରେ, ଭୀଷଣ ରବରେ ଘୂର୍ଣ୍ଣିତ ହେବାକୁ ଲାଗିଲା । ମୃତ ଦେହ ଉପରେ ମୃତ ଦେହ ପତିତ ହେଲା । ଛିନ୍ନ ମୁଣ୍ଡ ଉପରେ ଛିନ୍ନ ମୁଣ୍ଡ ନିକ୍ଷିପ୍ତ ହେଲା । ତଥାପି ସଂଗ୍ରାମର ବିରାମ ନାହିଁ । କ୍ଷତ୍ରିୟ ଯୁବାର ଘୂର୍ଣ୍ଣାୟମାନ ଅସିର ବିଶ୍ରାମ ନାହିଁ । ଅକସ୍ମାତ ଅଦୂରେ ହିନ୍ଦୁ ସେନାର ମାର ମାର ଶବ୍ଦ ଉତ୍ଥିତ ହେଲା । କେଶରୀ ସିଂହ ଦେଖିଲେ, ବିଜୟପାଳ ଓ ସେହି ବୀର ଯୁବକ ଗିରିଦୁର୍ଗର ସେନାଗଣ ସହ ସମର ପ୍ରାଙ୍ଗଣକୁ ଧାବିତ ହୋଇଛନ୍ତି । ସେ ଉଚ୍ଚୈଃ ସ୍ୱରରେ ଡାକିଦେଲେ—ହିନ୍ଦୁଅ, ଦେଖ, ମୁଁ ମୋର ବ୍ରତ ଉଦ୍ଯାପନ କରେଁ । ଅବଶିଷ୍ଟ ମୁସଲମାନ ସେନା ଯୁଦ୍ଧରେ ପୃଷ୍ଠଭଙ୍ଗ ଦେଇ ପଳାୟନ କରିବାକୁ ଲାଗିଲେ । କେଶରୀ ସିଂହ ସେମାନଙ୍କର ଗତିରୋଧ କରିବାକୁ ଯାଇ ଉଭୟ

ବାହୁ ଉତ୍ତୋଳନ କରନ୍ତେ, ତାଙ୍କର ବାହୁ ଦ୍ୱୟ ଛିନ୍ନ ହେଲା । ତଥାପି ସେ ବିବ୍ରତ ନୁହନ୍ତି । ସମ୍ମୁଖୀନ ହୋଇ ପଳାତକ ସୈନିକମାନଙ୍କୁ ପଦାଘାତ କରିବାକୁ ଲାଗିଲେ । ନିମେଷ ମଧ୍ୟରେ ତାଙ୍କର ଛିନ୍ନ ମସ୍ତକ ଧରାଶାୟୀ ହେଲା । ରାଜପୁତ ଯୁବରାଜଙ୍କର ଭୀଷଣ ପ୍ରାୟଶ୍ଚିତ ପୂର୍ଣ୍ଣ ହେଲା ।

—୧୪—

## ପିତୃ ତର୍ପଣ

ଆଫଜଲ ଖାଁ ବହୁଦୂର ପଳାୟନ କରି ଥରେ ପଛଆଡ଼କୁ ଅନାଇ ଦେଖିଲେ, ଜଣେ ମାତ୍ର ଅଶ୍ୱାରୋହୀ ତାଙ୍କୁ ଅନୁସରଣ କରୁଅଛି । ଖାଁ ସାହେବ ମନେକଲେ—ଆଜିଥରେ ପ୍ରାଣପଣେ ପଳାୟନ କରି ଆପଣାର ଅମୂଲ୍ୟ ଜୀବନ ରକ୍ଷା କରିବେ । ମାତ୍ର ଅଶ୍ୱାରୋହୀର ମୁଖ ଦେଖି ତାଙ୍କ ହୃଦୟରେ ଆଶାର ସଞ୍ଚାର ହେଲା । ଦେଖିଲେ ଅଶ୍ୱାରୋହୀ ଅଜାତ ଶ୍ମଶ୍ରୁ ବାଳକ ମାତ୍ର । ଜଣେ ବାଳକ ସହିତ ଯୁଦ୍ଧରେ କୌଣସି ବିଶେଷ ଆଶଙ୍କାର ସମ୍ଭାବନା ନାହିଁ, କିନ୍ତୁ ବାଳକର ସାହାଯ୍ୟ ସକାଶେ ଅନ୍ୟ ଦିଗରୁ କେହି ନ ଆସିଲେ ରକ୍ଷା । ଯାହାହେଉ, ଖାଁ ସାହେବ ତ୍ରସ୍ତବ୍ୟସ୍ତ ହୋଇ ଚାରିଆଡ଼କୁ ଥରେ ଅନାଇ ଦେଖିଲେ କେହି ନାହିଁ । ଦେଖୁଁ ଦେଖୁଁ ବାଳକ ସମୀପବର୍ତ୍ତୀ ହେଲା । ଆଫଜଲ ଖାଁ କହିଲେ ନିର୍ବୋଧ ବାଳକ, ଅକାରଣ ଜୀବନ ହରାଇବାର ପ୍ରୟୋଜନ କଣ ?

ବାଳକ—ମୂର୍ଖ, ଭଲକରି ଦେଖ, ମୁଁ ବାଳକ ନୁହେଁ ବାଳିକା । ବାଳିକା ନୁହେଁ ନାରୀ—ପଳାୟନରୁ ନିବୃତ୍ତ ହୋଇ ଥରେ ଏ ବୀର ନାରୀ ସଙ୍ଗେ ଯୁଦ୍ଧ କର ।

ସଭୟ, ସନ୍ଦିହାନଚିତ୍ତ ଆଫଜଲ ଖାଁ ବାଳକର ମୁଖମଣ୍ଡଳ ଅବଲୋକନ କରିବାକୁ ଲାଗିଲେ । ବାଳକ ମସ୍ତକରୁ ଉଷ୍ଣୀଷ କାଢ଼ିପକାନ୍ତେ କମନୀୟ ଆନନ ପ୍ରତିପଦ ହେଲା । ବିଳାସ କୁମାରୀ ପ୍ରଶ୍ନକଲେ—ସେନାପତି ଏବେ ଚିହ୍ନିପାରିଲୁ ମୁଁ କିଏ ?

ସଭୟରେ, ସବିସ୍ମୟରେ ସେହି ଭୁବନମୋହିନୀ ମୂର୍ତ୍ତି ନିରିକ୍ଷଣ କରି ଆଫଜଲ ଖାଁ ଅସ୍ପଷ୍ଟ ସ୍ୱରରେ କହିଲେ, ବିକ୍ରମ ସିଂହ କନ୍ୟା ? ଆଫଜଲ ଖାଁଙ୍କ କଥା ଶେଷ ନହେଉଣୁ ବିଳାସ କୁମାରୀ ତାଙ୍କ ଗ୍ରୀବା ଧାରଣ କରି ଭୀମ ଗର୍ଜନରେ କହିଲେ—ବିକ୍ରମ ସିଂହ ଦୁହିତା, ଆଜି ପିତୃହନ୍ତାର ଶୋଣିତରେ ପରଲୋକଗତ ପିତୃଦେବଙ୍କ ତର୍ପଣ କରିବ । ସାଧ୍ୟ ଥିଲେ ଆତ୍ମରକ୍ଷା କର ।

ଆଫଜଲ ଖାଁ କମ୍ପିତ କରରେ ତରବାରୀ ଉତ୍ତୋଳନ କରୁ କରୁ ପଲକ ମାତ୍ରକେ ତାଙ୍କ ଶିର ଭୂଲୁଣ୍ଠିତ ହେଲା । ମୁହୂର୍ତ୍ତକ ପରେ ଯୋଦ୍ଧି ସମର ପ୍ରାଙ୍ଗଣରେ ହିନ୍ଦୁ ବୀରଗଣ ଅଶ୍ୱ ପୃଷ୍ଠରେ ବୈରୀ ନାଶିନୀ, ସିଂହବାହିନୀ ସମର୍ଜିନ ମୁଣ୍ଡ ହସ୍ତା ଶୋଣିତାକ୍ତ କଳେବର, ଆଲୁଳାୟିତ କୁନ୍ତଳା ରଣଚଣ୍ଡୀ ମୂର୍ତ୍ତି ଦେଖିଲେ ।

—୧୭—

# ସନ୍ନ୍ୟାସିନୀ

ଯମୁନା ତୀରରେ ଦୁଇଜଣ ସନ୍ୟାସିନୀ ଖଣ୍ଡିଏ ପ୍ରସ୍ତର ଉପରେ ଉପବେଶନ କରି ସନ୍ଧ୍ୟା ଗଗନରେ ସୂର୍ଯ୍ୟାସ୍ତ ଦେଖୁଥିଲେ । ଦୁହେଁ ସୁନ୍ଦରୀ, ଦୁହେଁ ଯୁବତୀ, ଦୁହେଁ ସମବୟସ୍କା, କିନ୍ତୁ ଦୁଇଜଣଙ୍କ ବେଶଭୂଷା ସମ୍ପୂର୍ଣ୍ଣ ଭିନ୍ନ । ଦୁହିଁଙ୍କ ମୁହଁ ଦେଖିଲେ ବୋଧହୁଏ, ଦୁହିଁଙ୍କ ମନର ଭାବ ମଧ୍ୟ ବିଭିନ୍ନ । ଜଣେ ସ୍ଥିର କଟାକ୍ଷର ମଳିନ ମୁଖରେ ନଦୀ ତରଙ୍ଗୋପରି ଅସ୍ତମିତ ରବିର ରକ୍ତିମ ମୂର୍ତ୍ତି ଦେଖୁଅଛି । ଅପର ଉଜ୍ଜ୍ୱଳ ଲୋଚନରେ ଆପଣାର ସଙ୍ଗିନୀ ଆଡ଼କୁ ଅନାଇ ଅସ୍ପଷ୍ଟ ଗୁଣୁ ଗୁଣୁ ସ୍ୱରରେ ସଙ୍ଗୀତ ଗାନ କରୁଅଛି । ସନ୍ନ୍ୟାସାଶ୍ରମ ଭିନ୍ନ ଅନ୍ୟତ୍ର ଏ ରମଣୀକୁ ଦେଖିଥିଲେ ସନ୍ନ୍ୟାସିନୀ ନୁହେଁ ବୋଲି ସନ୍ଦେହ ହେବାର କଥା । ଏହାର ବେଶଭୂଷା, ଭାବଭଙ୍ଗୀ ଦେଖିଲେ ଅନୁମାନ ହୁଏ, ଯେପରି ଏହାକୁ କେହି ବଳପୂର୍ବକ ସନ୍ନ୍ୟାସିନୀ କରାଇଛି । ତାହାର କୁସୁମ କୋମଳ ତନୁ ଗୈରିକବସନାବୃତ, ତାହାର କେଶଗୁଚ୍ଛ ରୁକ୍ଷ ଓ ଆଲୁଳାୟିତ ; ତାହାର ଚନ୍ଦ୍ରମା ବଦନ ବିଭୂତି ଲେପିତ ହୋଇ କୃଷ୍ଣ ମେଘାବୃତ ପୂର୍ଣ୍ଣଚନ୍ଦ୍ର ପ୍ରାୟ ଶୋଭିତ । ଆହା ! ଏ କୋମଳ ଦେହରେ ଏ କଠୋର ବ୍ରତ ?

ସନ୍ୟାସିନୀ ଦୁହିଁଙ୍କ ମଧ୍ୟରୁ ଜଣେ କହିଲା—ରାଜନନ୍ଦିନୀ । ସନ୍ନ୍ୟାସିନୀ ହେବା ତ ହେଲୁ ଏବେ ମୁଁ ତୋତେ ରାଜରାଣୀ ବେଶରେ ସଜାଇ ଦିଏଁ ।

ଦ୍ୱିତୀୟ ସନ୍ନ୍ୟାସିନୀ—ସଖୀ, ତୋର ସବୁବେଳେ ପରିହାସ ।

ପ୍ରଥମା ସନ୍ନ୍ୟାସିନୀ—ପରିହାସ ନୁହେଁ ସଖୀ । ଏତେଦିନ ଯାଏ ତୋତେ କହି ନଥିଲି, ଯେଉଁଦିନ ଆମ୍ଭେମାନେ ଗିରିଦୁର୍ଗ ପରିତ୍ୟାଗ କରି ଆସିଲୁ, ସେହିଦିନ ବିଜୟପାଳ ମହାରାଣା ଜୟସିଂହଙ୍କ ନିକଟକୁ ଯାଇଥିଲେ । ମହିଷୀ ଅରୁନ୍ଧତୀ ମହାରାଣା ଜୟସିଂହଙ୍କ ପୁତ୍ର ଅମର ସିଂହ ସହିତ ତୋର ବିବାହ ପ୍ରସ୍ତାବ କରି ବିଜୟପାଳକୁ ଉଦୟପୁର ପଠାଇଥିଲେ । କାଲି ରାତିରେ ବିଜୟପାଳ ନିକଟରେ ଯେଉଁ ପତ୍ର ଆସିଥିଲା ମୋଠାରେ ଅଛି ଦେଖ ।

ଦ୍ୱିତୀୟା ସନ୍ନ୍ୟାସିନୀର ଅନିଚ୍ଛା ସତ୍ତ୍ୱେ ପ୍ରଥମା ପତ୍ର ପାଠ କରିବାକୁ ଲାଗିଲା ।

ମିବାରର ମହାରାଣା ମୋହର ପ୍ରସ୍ତାବରେ ସମ୍ମତ ହୋଇଅଛନ୍ତି । ତାହାଙ୍କ ପୁତ୍ର କୁମାର ଅମର ସିଂହ ନବୀନ ସନ୍ନ୍ୟାସିନୀ ଅମ୍ବର ରାଜତନୟା ଅମ୍ବାଳିକାଙ୍କୁ ଘେନି ଆସିବା ନିମିତ୍ତ ଅତିଶୀଘ୍ର ବରବେଶରେ ବୃନ୍ଦାବନରେ ଉପସ୍ଥିତ ହେବେ । ରାଜକୁମାରୀଙ୍କୁ ଜଣାଇବେ, ତାଙ୍କର ସେହି ହସର ସାଗର ବୀର ନାଗର ମଧ୍ୟ ଯାଉଅଛନ୍ତି । ଆଜ ସକାଶେ ସେ ଆଜହୁଁ ମାଳା ଗୁନ୍ଥନ୍ତୁ ।

। ଇତି ।

ବିଜୟପାଳ

ଦ୍ୱିତୀୟା ସନ୍ନ୍ୟାସିନୀ ସଜଳ ନୟନରେ ରାଧାମାଧବଙ୍କ ମନ୍ଦିର ଆଡ଼କୁ ଅନାଇ କହିଲେ—ସଖୀ ଯେ ତ୍ରିଦିବେଧାମର ଅଧୀଶ୍ୱର ରାଧାମାଧବଙ୍କ ଦାସୀ ମର୍ତ୍ତ୍ୟଲୋକର ଅଧୀଶ୍ୱରର କି ସାଧ୍ୟ ତାହାର ଅଙ୍ଗ ସ୍ପର୍ଶ କରିବ ?

ପ୍ରଥମା ସନ୍ନ୍ୟାସିନୀ—ଦେଖାଯାଉ, ଆଉ ତ ବେଶିଦୀନ ନାହିଁ—ହାତରେ ଶଙ୍ଖା; ଦର୍ପଣ ଦେଖା କାହିଁକି ?

କ୍ରମଶଃ

—୧୨—

# ପଶ୍ଚାତ୍ସ୍ମୃ

ଯେଉଁଦିନ ପାଠକେ ଅମ୍ବାଳିକା ଓ ବିଳାସ କୁମାରୀଙ୍କୁ ବୃନ୍ଦାବନରେ ସନ୍ନ୍ୟାସିନୀ ବେଶରେ ଦେଖିଲେ, ତହିଁର ଦଶବର୍ଷ ପୂର୍ବେ ଦିନେ ନିଦାଘ ଦ୍ୱିପହରବେଳେ ଉଦୟପୁର ରାଜପ୍ରାସାଦରେ ମହାରାଣା ଜୟସିଂହଙ୍କ ଜ୍ୟେଷ୍ଠା ମହିଷୀ କର୍ଣ୍ଣାବତୀ ମଳିନ ମୁଖରେ, ଅବନତ ବଦନରେ ପଲ୍ୟଙ୍କୋପରି ଉପବେଶନ କରିଥିଲେ । କେତେଦିନ ହେଲା ମହିଷୀଙ୍କ ହୃଦୟରେ ଶାନ୍ତି ନାହିଁ । ତାହାଙ୍କର ଦ୍ୱାଦଶ ବର୍ଷୀୟ ପୁତ୍ର କୁମାର ଅମର ସିଂହ ଆଜକୁ ଦୁଇ ମାସ ହେଲା ଆହେରିଆ ଉତ୍ସବରୁ ଫେରିଆସି ଏକାକୀ ଚିନ୍ତାମଗ୍ନ । ଆହାର ନାହିଁ, ନିଦ୍ରା ନାହିଁ, ହୃଦୟରେ ସୁଖ ସନ୍ତୋଷ ନାହିଁ । କେତେବେଳେ ବା ନିର୍ଜନରେ ଉଦ୍ୟାନ ବାଟିକାରେ ଉପବେଶନ କରିଥାନ୍ତି, କେତେବେଳେ ଅବା ରାଜ ସମୁଦ୍ର ତଟରେ ଏକାକୀ ବସି ରହିଥାନ୍ତି । କେତେ ରାଜ ବୈଦ୍ୟ ବିଫଳ ମନୋରଥ ହେଲେଣି, କେହି କୁମାରଙ୍କର ଚିତ୍ତ ବିକାରର କାରଣ ଅନୁମାନ କରିପାରୁ ନାହାନ୍ତି, ଦେବୀ କର୍ଣ୍ଣାବତୀଙ୍କ ଅନତି ଦୂରରେ ଅପର ପଲ୍ୟଙ୍କୋପରି କନିଷ୍ଠା ରାଜମହିଷୀ କମଳା ଦେବୀ ଦର୍ପଣ ସମ୍ମୁଖରେ ଥୋଇ ସ୍ୱହସ୍ତରେ କେଶବିନ୍ୟାସ କରୁଅଛନ୍ତି ଏବଂ ମୃଦୁ, ଅସ୍ପଷ୍ଟ, ମଧୁର ସ୍ୱରରେ ସଙ୍ଗୀତ ଗାନ କରୁଅଛନ୍ତି । ଇତିହାସ ପାଠକ ମାନଙ୍କର ସ୍ମରଣ ଥାଇପାରେ; ପ୍ରମାର ରାଜବଂଶ ସମ୍ଭୂତା କମଳା ଦେବୀ ଇତିହାସରେ 'ଅମ୍ଭାଭିମାନିନୀ ରାଣୀ' ନାମରେ ଅଭିହିତା । କମଳା ଦେବୀ କେଶବିନ୍ୟାସ ସମାପନ କରି ଦର୍ପଣରେ ସ୍ୱୀୟ ତାମ୍ବୁଳ ରାଗରଞ୍ଜିତ ଅଧରର ପ୍ରତିବିମ୍ବ ନିରୀକ୍ଷଣ କରୁ କରୁ କର୍ଣ୍ଣାବତୀଙ୍କ ଆଡକୁ ଅନାଇ କହିଲେ—ତୁମେ ତ କାହାରି ଉପଦେଶ ଶୁଣିବ ନାହିଁ । ଆପେ ଯାହା ଭଲ ମନେକରିବ, ସେଇଆ କରିବ । ମୁଁ ବାରମ୍ବାର କହୁଛି, ଆଉ କାଳବିଳମ୍ବ ନକରି କୁମର ଅମରଙ୍କୁ ବିଭା କରାଇଦେଲେ ତା'ର ମନ ସ୍ଥିର ହୋଇଯିବ । ମୁଁ ଅନେକ ପଚାରି ପଚାରି ସେଦିନ ତାଠୁଁ ଶୁଣିଲି, ରାଜସମୁଦ୍ର ତୀରରେ ଦିନେ ଗୋଟିଏ ସୁନ୍ଦରୀ ବାଳିକା ସଙ୍ଗେ ତାର ସାକ୍ଷାତ୍ ହୋଇଥିଲା । ତାପରେ ଆଉ ତାକୁ ନଦେଖି ତା'ର ମନରେ ଏପରି ଭାବ ହୋଇଅଛି—

କର୍ଣ୍ଣାବତୀ—ରାଜ ସମୁଦ୍ର ତଟରେ ସେ ଯେଉଁ କନ୍ୟାକୁ ଦେଖିଥିଲା, ତାହାର ସନ୍ଧାନ ମିଳିବ ବା କିପରି ?

କମଳା—ସେଇ କ'ଣ ଏ ସଂସାରରେ ସୁନ୍ଦରୀ କନ୍ୟା ଅଛି ଆଉ ସୁନ୍ଦରୀ ନାହାନ୍ତି । ଗୋଟିଏ ସୁନ୍ଦରୀ କନ୍ୟା ଖୋଜାଇ ବିବାହ ଦେଲେ ହେବ ? ଉଦୟପୁରର ରାଣାଙ୍କ ପୁତ୍ର ଲାଗି ସୁନ୍ଦରୀ କନ୍ୟା ଅଭାବ ? ସେନାପତି ବିକ୍ରମ ସିଂହଙ୍କ କନ୍ୟା ବିଳାସ କୁମାରୀ ତ ଅତ୍ୟନ୍ତ ସୁନ୍ଦରୀ ।

କର୍ଣ୍ଣାବତୀ—ହେଉ । ମୁଁ ବା ସେଥିରୁ ସମ୍ମତ ହେଲି, କିନ୍ତୁ ରାଣାଙ୍କ ଅନୁମତି ।

କମଳାଦେବୀ—ସେ ଭାର ମୋ ଉପରେ ।

ଚଞ୍ଚଳା, ସଚଳା ହୃଦୟା, ଅଭିମାନିନୀ ରାଣୀ ରାଣା ଜୟସିଂହଙ୍କୁ ସ୍ୱୀୟ ପ୍ରସ୍ତାବରେ ସମ୍ମତ କରାଇ ବିବାହର ଉଦ୍ୟୋଗ କରାଇବାକୁ ଚଞ୍ଚଳ ଚରଣରେ ରାଣାଙ୍କ ଶୟନ କକ୍ଷରେ ପ୍ରବେଶ କଲେ ।

× × × ×

ଆମେର ନଗରର କିୟତ ଦୂରରେ ପର୍ବତୋପରି ଗୋଟିଏ ପୁରାତନ ଦୁର୍ଗ ଥିଲା । ସେ ଦୁର୍ଗ ଅଦ୍ୟାପି ଅଲଂଗନ ନାମରେ ପ୍ରସିଦ୍ଧ । ଦୁର୍ଗ ସ୍ୱାମୀ ସୋଲାଙ୍କୀ ସେନାପତି ବିକ୍ରମ ସିଂହ ଅଳ୍ପ ସଂଖ୍ୟକ ସୈନ୍ୟ ଘେନି ସେହି ଦୁର୍ଗରେ ଅବସ୍ଥାନ କରୁଥିଲେ । ବିକ୍ରମ ସିଂହଙ୍କର ଏକମାତ୍ର ଏକାଦଶ ବର୍ଷୀୟା ଦୁହିତା 'ଦେବଯାନୀ' ଭିନ୍ନ ଅନ୍ୟ ଅପତ୍ୟ ନଥିଲେ । ଦେବଯାନୀ ଅତ୍ୟନ୍ତ ବେଶଭୂଷା ପ୍ରିୟ ଥିବାରୁ ପିତା ଆଦରରେ ନାମ ଦେଇଥିଲେ 'ବିଳାସ-କୁମାରୀ' । ଦେବଯାନୀର ଯେତେବେଳେ ଏକବର୍ଷ ମାତ୍ର ବୟସ, ସେତେବେଳେ ତାହାର ଜନନୀଙ୍କର ମୃତ୍ୟୁ ହୋଇଥିଲା, ତଦବଧି ଦଶବର୍ଷ କାଳ ବିଳାସ କୁମାରୀ ପିତାଙ୍କର ଅବିଚ୍ଛିନ୍ନ ସ୍ନେହ ଓ ଅତୁଳନୀୟ ଆଦରରେ ପ୍ରତିପାଳିତା । ବିକ୍ରମ ସିଂହ କନ୍ୟାକୁ ପୁତ୍ର ତୁଲ୍ୟ ଲାଳନପାଳନ କରି ପୁତ୍ରତୁଲ୍ୟ ତାହାର ଶିକ୍ଷାବିଧାନ କରିଥିଲେ, ସେ ସ୍ୱୟଂ ତାହାକୁ ସଂସ୍କୃତ ପଢ଼ାଇଥିଲେ । ସ୍ୱୟଂ ତାହାକୁ ଅସ୍ତ୍ରବିଦ୍ୟା ଶିକ୍ଷା ଦେଇଥିଲେ, ଏବଂ ସମୟ ସମୟରେ ତାହାକୁ ଯୁଦ୍ଧ କ୍ଷେତ୍ରକୁ ସାଙ୍ଗରେ ଘେନି ଯାଉଥିଲେ ।

ଦିନେ ସନ୍ଧ୍ୟା ପୂର୍ବରୁ ସେନାପତି, ପ୍ରାସାଦର ଶିରୋଭାଗରେ ଉପବେଶନ କରିଅଛନ୍ତି, ପାର୍ଶ୍ୱରେ ସ୍ନେହମୟୀ ବିଳାସ କୁମାରୀ, ସେ ଚିବୁକରେ କର ଦେଇ ଚିନ୍ତାମଗ୍ନ ରହିଥିଲା । ହଠାତ୍ ସ୍ୱପ୍ନ ଦେଖିଲା ପରି କହି ପକାଇଲା—ବାରବର୍ଷ ପିଲାର ଏତେ ସାହସ । ବଡ଼ ହେଲେ ସେ କେତେ ବୀର ନହେବ ।

ବିକ୍ରମ—ବତ୍ସେ ! ସର୍ବଦା ତୋ ମୁହଁରେ ସେଇକଥା ।

ବିଳାସ—ପିତା, ସେଇ ବୀର ବାଳକ କଥା ମୋର ସର୍ବଦା ମନେପଡ଼େ । ଆହେରିଆ ଉତ୍ସବ ଦିନ ସେ ତୁମ୍ଭର ଜୀବନ ରକ୍ଷା କରିଥିଲା ତେଣୁ ମୁଁ ତାକୁ ପାସୋରି ପାରୁନାହିଁ । ବନ୍ୟ ବରାହ ସଙ୍ଗେ ଯୁଦ୍ଧ କରୁ କରୁ ଯେତେବେଳେ ତୁମ୍ଭ ହାତରୁ ତରବାରୀ ଖସିପଡ଼ିଲା, ସେହି ବୀର ବାଳକ ଅସି ହସ୍ତରେ ସମ୍ମୁଖୀନ ହୋଇଥିଲେ । ବରାହର ଦନ୍ତାଘାତରେ ତୁମ୍ଭର ବକ୍ଷ ବିଦୀର୍ଣ୍ଣ ହୋଇଥାନ୍ତା । ପିତା, ବାସ୍ତବରେ ମୋର ତାକୁ ଥରେ ଦେଖିବାକୁ ବିଶେଷ ଇଚ୍ଛା ।

× × × ×

ଆଜି ପୂର୍ଣ୍ଣିମା ନିଶି । ଅଚଳ ଗଥନର ଚତୁଃପାର୍ଶ୍ୱରେ ଆଜି ଅସଂଖ୍ୟ ଲୋକ ସମାଗମ, ଆଜି ରାତ୍ରିରେ ସେନାପତି ବିକ୍ରମସିଂହଙ୍କ କନ୍ୟା ଦେବଯାନୀ ସଙ୍ଗେ ମହାରାଜା ଜୟସିଂହଙ୍କ ପୁତ୍ର ଅମର ସିଂହଙ୍କର ବିବାହ ଉତ୍ସବ ସମ୍ପନ୍ନ ହେବ । ସନ୍ଧ୍ୟା ପରେ ଗଗନଭେଦୀ ବାଦ୍ୟ ଧ୍ୱନି ଉଠିବ । ବିକ୍ରମ ସିଂହଙ୍କ

ହୃଦୟ ଆନନ୍ଦରେ ଉଚ୍ଛୁଳି ପଡ଼ୁଅଛି । ପୁରୋହିତ ଶୁଭ ଲଗ୍ନବେଳେ ବେଦମନ୍ତ୍ର ଉଚ୍ଚାରଣ କଲେ । ବାଳିକା ଦେବଯାନି ଅବଗୁଣ୍ଠନ ମଧ୍ୟରୁ ଆପଣାର ଭବୀ ଜୀବନର ଅଧୀଶ୍ୱର ଅମରଙ୍କର ଅନିନ୍ଦ୍ୟ ବଦନଶ୍ରୀ ପ୍ରୀତି ପ୍ରଫୁଲ୍ଲ ନୟନରେ ଦର୍ଶନ କରିବାକୁ ଲାଗିଲେ । ବାଳକ ଅମର ସିଂହ ସ୍ୱୀୟ ଭବୀ ଜୀବନର ସହଚରୀ ଆଡ଼କୁ ଅନାଇଲେ । ମାତ୍ର ବେଳେ ବେଳେ ତାହାଙ୍କ ହୃଦୟ ସନ୍ଦେହରେ ଆନ୍ଦୋଳିତ ହେଉଥାଏ—ପିତା ଯାହାଙ୍କ ସହିତ ତାଙ୍କର ବିବାହ ଦେଉଅଛନ୍ତି, ସେ ରଜ ସମୁଦ୍ର ତଟରେ ଯେଉଁ ଲାବଣ୍ୟମୟୀ ମୂର୍ତ୍ତି ଦର୍ଶନ କରିଥିଲେ, ସେ ନ ହୋଇଥିବେ ପରା ? ହୁଏତ କନିଷ୍ଠା ମହିଷୀ କମଳା ଦେବୀ ଛଳନାପୂର୍ଣ୍ଣ ବଚନରେ ତାଙ୍କର ମନ ଭୁଲାଇବାକୁ ଚେଷ୍ଟା କରିଅଛନ୍ତି ।

ମଧୁଶଯ୍ୟା ସମୟ ଉପସ୍ଥିତ । ରମଣୀଗଣ ସୁସଜ୍ଜିତ କକ୍ଷ ମଧ୍ୟରେ ବରକନ୍ୟାଙ୍କୁ ରଖି ପ୍ରସ୍ଥାନ କଲେ । ଉଭୟେ କିୟତ୍‌କ୍ଷଣ ନୀରବ ରହିଲେ । ଉତ୍ତାରୁ ଅମର ସିଂହ ଦେବଯାନିର ବଦନ ମଣ୍ଡଳରୁ ପଣନ୍ତ କାଢ଼ିଦିଅନ୍ତେ ଚମକି ପଡ଼ିଲେ—ଏ କ'ଣ ? ଏ ତ ସେ ନୁହେଁ । ଅମର ଦ୍ରୁତ ଗତିରେ ସେଠାରୁ ବହିର୍ଗତ ହେଲେ । ଲୋକମାନେ ତାଙ୍କର ଗତିରୋଧ କରନ୍ତେ ଭୀଷଣ ଗର୍ଜନ କରି କହିଲେ—ସାବଧାନ । ମୋତେ କେହି ସ୍ପର୍ଶ କରନାହିଁ ।

ଅମର ସହସା ଜଣେ ଅଶ୍ୱାରୋହୀ ପ୍ରହରିକୁ ଭୂତଳରେ ନିକ୍ଷେପ କରି ତାହାର ଅଶ୍ୱରେ ଆରୋହଣ ପୂର୍ବକ ଦ୍ରୁତ ଗତିରେ ଉଦୟପୁର ଅଭିମୁଖରେ ଅଶ୍ୱଚାଳନା କଲେ । ଏକମାତ୍ର ପ୍ରାଣାଧିକ ପୁତ୍ରର ଏତାଦୃଶ ଅବସ୍ଥା ଦେଖି କର୍ଣ୍ଣାବତୀ ମର୍ମାହତ ହେଲେ ଏବଂ କମଳା ଦେବୀଙ୍କୁ ତାଙ୍କର ଅପରିଣାମ ଦର୍ଶିତା ଯୋଗୁ ଧିକ୍କାର କଲେ । କମଳା ଦେବୀ କାନ୍ଦି କାନ୍ଦି ରାଣାଙ୍କ ନିକଟରେ ଉପସ୍ଥିତ ହେଲେ । ରାଣାଙ୍କ ସହିତ ଗୋପନରେ ତାଙ୍କର କି କଥୋପକଥନ ହେଲା, ତାହା ଆମ୍ଭମାନଙ୍କ ଅଗୋଚର, କିନ୍ତୁ ପରଦିନ ପ୍ରଭାତରେ ରାଣା ଜୟସିଂହ ଅମାତ୍ୟବର୍ଗଙ୍କ ଉପରେ ଶାସନ ଅର୍ପଣ କରି କମଳା ଦେବୀଙ୍କ ସହ ଜୟ ସମୁଦ୍ରର ନିଭୃତ ପ୍ରମୋଦ ଭବନକୁ ପ୍ରସ୍ଥାନ କଲେ ।

× × × ×

ଯୁବରାଜ ଅମର ସିଂହଙ୍କ ସହିତ ସୋଲାଙ୍କୀ ସେନାପତିଙ୍କ କନ୍ୟାର ଅସମ୍ପୂର୍ଣ୍ଣ ବିବାହ ବିଷୟ ଚତୁର୍ଦ୍ଦିଗରେ ରଷ୍ଟ୍ର ହୋଇଗଲା ତହିଁ ସଙ୍ଗେ ସଙ୍ଗେ ବିଳାସ କୁମାରୀର ନିରୁପମ ରୂପ ଲାବଣ୍ୟ ଜନରବରେ ସହସ୍ର ଯମୁନାରେ ଘୋଷିତ ହେବାକୁ ଲାଗିଲା । ମୋଗଲ ସେନାପତି ଆଫଜଲ ଖାଁ ଜନରବର ସତ୍ୟତା ଉପଲବ୍ଧି କରିବା ଲାଗି ଦିନେ ବିକ୍ରମ ସିଂହଙ୍କ ସହିତ ସାକ୍ଷାତ୍ କରିବା ଛଳରେ ଅଚଳ ପଦରେ ଉପସ୍ଥିତ ହେଲେ । ବିଳାସ କୁମାରୀ ସେତେବେଳେ ଚତୁର୍ଦ୍ଦଶ ବର୍ଷୀୟା ବାଳିକା ମାତ୍ର । ଅନାଘ୍ରାଣ ପାରିଜାତ କଳା ଧଳାର ଅଘ୍ରାଣ ଲାଳସାରେ ସେନାପତି ଆଫଜଲ ଖାଁର ହୃଦୟ ବ୍ୟାକୁଳ ହେଲା । କିଛିଦିନ ପରେ, ଦିନେ ନିଦାଘ ନିଶିଥରେ ବିଳାସ କୁମାରୀ ପିତାଙ୍କ ଶଯ୍ୟା ପାର୍ଶ୍ୱରେ ନିଦ୍ରିତା ରହିଛନ୍ତି, ସହସା ବହୁ ଲୋକଙ୍କ କୋଳାହଳରେ ତାଙ୍କର ନିଦ୍ରାଭଙ୍ଗ ହେଲା । ବାଳିକା ଦଣ୍ଡାୟମାନ ହୋଇ ଦେଖିଲା, ଚତୁର୍ଦ୍ଦିଗରେ ସଶସ୍ତ୍ର ମୁସଲମାନ ସେନା । ନିଦ୍ରିତ ପିତାଙ୍କ ଶଯ୍ୟା

ପାର୍ଶ୍ୱରେ ଶୋଣିତାକ୍ତ ତରବାରୀ ହସ୍ତରେ ଜଣେ ଉଗ୍ରମୂର୍ତ୍ତି ମୁସଲମାନ ପାପିଷ୍ଠ ଯବନ ସେନାପତି ଅଫଜଲ ଖାଁ ସୁପୁପ୍ତ ବାଳର ବକ୍ଷ ଦେଶରେ ତରବାରୀ ପ୍ରହାର କଲା । ବିଳାସ କୁମାରୀ ମୂର୍ଚ୍ଛିତା ହୋଇ ଭୂତଳରେ ପତିତ ହେଲା । ଦୁର୍ଗ ମଧ୍ୟସ୍ଥ ଅଳ୍ପ ସଂଖ୍ୟକ ସେନା ଏ କୋଳାହଳ ଶୁଣି ଅଗ୍ରସର ହେଲେ । ମୁସଲମାନ ସେନାଗଣ ସେମାନଙ୍କର ପ୍ରତିରୋଧ କରିବାକୁ ଲାଗିଲେ । ମୋଗଲ ସେନାପତି ମୂର୍ଚ୍ଛିତା ବାଳିକାକୁ ବକ୍ଷରେ ଧାରଣ କରିବାକୁ ଅଗ୍ରସର ହେଉଅଛି, ଏମନ୍ତ ସମୟରେ ତାହାର ସମ୍ମୁଖରେ ଜଣେ ଭୀମମୂର୍ତ୍ତି କୌପୀନ ଧାରୀ ଫକୀର ଉପସ୍ଥିତ ହେଲେ । ତାଙ୍କର ଦକ୍ଷିଣ ହସ୍ତରେ ଭୀଷଣ କୃପାଣ ଦୋଳୟମାନ, ବିଶାଳ ଆରକ୍ତ ନୟନ ଯୁଗଳରୁ ଅଗ୍ନି ସ୍ଫୁଲିଙ୍ଗ ନିର୍ଗତ ହେଉଅଛି, ତାଙ୍କର ଭ୍ରୁକୁଟି କୁଟିଳ ଭ୍ରୁଖଣ୍ଡ ଜ୍ୱଳନ୍ତ ଜଟା କପାଳରେ ଅର୍ଦ୍ଧାବୃତ । ବିସ୍ତୃତ ଉପସୋପରି ଶ୍ୱେତ ଶ୍ମଶ୍ରୁ ରାଶି ବିଳମ୍ବିତ । ଅଫଜଲ ଖାଁ କେମିତି ପଛକୁ ଘୁଞ୍ଚିଗଲା । ଫକୀର ଏକ ହସ୍ତରେ ଅଫଜଲ ଖାଁର ଗ୍ରୀବା ଧାରଣ କରି ଅନ୍ୟ ହସ୍ତରେ ଅସି ଉତ୍ତୋଳନ ପୂର୍ବକ କହିଲେ—ପାପିଷ୍ଠ ମୋ ହସ୍ତରେ ତୋର ପାପର ଉପଯୁକ୍ତ ପ୍ରାୟଶ୍ଚିତ ନୁହେଁ, ପଳାୟନ କର ।

ଅଫଜଲ ଖାଁ ପ୍ରାଣ ଭୟରେ ଊର୍ଦ୍ଧ୍ୱଶ୍ୱାସରେ ପଳାୟନ କଲା । ତାହାର ଅନୁଚରବର୍ଗ ଦେଖି ଭୀମ ଦର୍ଶନ ଫକୀରର ଆଉକୁ ଅନାଇ ଅଫଜଲର ପଶ୍ଚାତ୍ ଧାବିତ ହେଲେ, ଦୁର୍ଗସ୍ଥ ସୈନ୍ୟମାନେ ମାର ମାର ରବରେ କିୟତ୍‌ଦୂର ସେମାନଙ୍କ ଅନୁଧାବନ କରି ଫେରି ଆସିଲେ ।

ଫକୀର ବିକ୍ରମ ସିଂହଙ୍କ ନିସ୍ପନ୍ଦ ଶରୀର ପର୍ଯ୍ୟବେକ୍ଷଣ କରି ଦେଖିଲେ ଆଉ ପ୍ରାଣବାୟୁ ନାହିଁ । ସେ ମୂର୍ଚ୍ଛିତା ବିଳାସ କୁମାରୀକୁ ଭୂତଳରୁ ଉଠାଇ ଆପଣା ସ୍କନ୍ଧରେ ଘେନି ଧୀରେ ଧୀରେ ସେଠାରୁ ପ୍ରସ୍ଥାନ କଲେ । କିୟତ୍‌କ୍ଷଣ ପରେ ବାଳିକା ଚେତନା ଲାଭକରି ଜିଜ୍ଞାସା କଲା ପିତା କାହାନ୍ତି—

ଫକୀର କରୁଣ କଣ୍ଠରେ ଉତ୍ତର ଦେଲେ—ବତ୍ସ । ଆଜିଠାରୁ ମୁଁ ତୋର ପିତା ।

X X X X

ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଅତୀତ ହେବାକୁ ଲାଗିଲା । ରଣା ଜୟସିଂହ ମହିଷୀ କମଳା ଦେବୀଙ୍କ ସହିତ ଜୟ ସମୁଦ୍ରର ପ୍ରମୋଦ ଭବନରେ ଅବସ୍ଥାନ କରିବାକୁ ଲାଗିଲେ । ଅଚିରାତ୍ ରାଠୋର ସେନାପତି ଦୁର୍ଗାଦାସଙ୍କ ଭେରୀ-ଧ୍ୱନିରେ ସମଗ୍ର ରାଜସ୍ଥାନ ନିନାଦିତ ହେଲା । ଏକେ ଏକେ ସମସ୍ତ ରାଜପୁତ ବୀରଗଣ ଆରାବଳି ଅତିକ୍ରମଣ କରି ଦୁର୍ଗାଦାସଙ୍କୁ ଆଲିଙ୍ଗନ କରିବାକୁ ଲାଗିଲେ । କେବଳ ରାଜକୁଳ ଶ୍ରେଷ୍ଠ ମିବାରର ରାଜ ଏ ମହା କୋଳାହଳ ମଧ୍ୟରେ ନୀରବ । ସମବେତ ରାଜନ୍ୟବୃନ୍ଦ ରଣାଙ୍କ ନିକଟକୁ ସକରୁଣ ଆବେଦନ ପ୍ରେରଣ କଲେ । ଏ ଦୁର୍ଦ୍ଦିନରେ ଦୁଃଖୀ ସମଗ୍ର ରାଜପୁତନାର ଦୁଃଖର ରୋଦନ ରଣାଙ୍କ ଅନ୍ତର ସ୍ପର୍ଶ କଲାନାହିଁ । କ୍ଷୁବ୍ଧ ଓ ବିସ୍ମିତ ରାଜପୁତ୍ର ବୀରଗଣ ଏଥିର କାରଣ ଜିଜ୍ଞାସା କରିବାକୁ ଉଦୟପୁର ପ୍ରାସାଦକୁ ମହିଷୀ କର୍ଣ୍ଣାବତୀଙ୍କ ନିକଟକୁ ଦୂତ ପ୍ରେରଣ କଲେ । ଦୂତର କରୁଣ କାହାଣୀରେ ରାଜପୁତ ରମଣୀର ହୃଦୟ ବିଚଳିତ ହେଲା । ଦୂତ ପ୍ରସ୍ଥାନ କରନ୍ତେ ରଣୀ ପ୍ରାଣାଧିକ ତନୟ ଅମରକୁ ଆହ୍ୱାନ କରି କହିଲେ—

ବତ୍ସ ! ଆଜି ବାପା ମା'ର ଓ ବଂଶର ଏ ଘୋର କଳଙ୍କ କିଏ ଅପନୟନ କରିବ ?

ଅମର—ମାତଃ ! ତେବେ ଅନୁମତି ଦିଅନ୍ତୁ, ଏ ଦାସ ଏ ପୂଣ୍ୟ ସମରରେ ପ୍ରାଣ ସମର୍ପଣ କରି ମିବାରର ଗୌରବ ରକ୍ଷା କରିବ ।

ରାଣୀ ଶାଶ୍ରୁ ନୟନରେ କହିଲେ—ବିଧାତା ! ମିବାରର ମହାରାଣାଙ୍କ ପୁତ୍ରକୁ ଆଜି ଯବନ ସମରକୁ ଏକାକୀ ଯିବାକୁ ହେଲା । ତେବେ ବତ୍ସ ବିଳମ୍ବରେ ନିଷ୍ପ୍ରୟୋଜନ ! ଏ ରାଜକୁମାର ବେଶ ପରିତ୍ୟାଗ କରି ସାମାନ୍ୟ ସୈନିକ ବେଶରେ ଯୁଦ୍ଧକ୍ଷେତ୍ରକୁ ଯାତ୍ରା କର । ଆଶୀର୍ବାଦ କରେ ଏ ଭୀଷଣ ସଂଗ୍ରାମରେ କ୍ଷତ୍ରିୟ ଶୌର୍ଯ୍ୟର ପରିଚୟ ଦେଇ ପ୍ରଭୁଙ୍କ କୃପାରୁ ଏକବର୍ଷ ପରେ ମୋତେ ଦେଖା ଦେବ ।

ସାମାନ୍ୟ ସୈନିକ ବେଶରେ କୁମାର ଅମର ସିଂହ ଜନନୀଙ୍କ ଚରଣ ଧୂଳି ମସ୍ତକରେ ଲଗାଇ ଏକାକୀ ଏକମାତ୍ର ଅଶ୍ୱ ଓ ତରବାରୀ ସହ ରାଜ ପ୍ରାସାଦରୁ ନିଷ୍କ୍ରାନ୍ତ ହେଲେ ।

ହାୟ ! ଆଜି ସେଦିନ କାହିଁ ? ଆଜି ସେଦିନର ସତ୍ୟ କାହାଣୀ ଉପନ୍ୟାସରେ ଶୁଦ୍ଧା ଅସମ୍ଭବ ଓ ଉପହାସ ଯୋଗ୍ୟ ହେଲା ।

—୧୮—

## ବିବାହ ପ୍ରସ୍ତାବ

ମହାରାଣା ଜୟସିଂହ ସ୍ୱୀୟ ବିଶ୍ରାମ କକ୍ଷରେ ଆସୀନ । ସମ୍ମୁଖରେ ପ୍ରସ୍ତରାସନରେ ବିଜୟପାଳ ଉପବିଷ୍ଟ । ବିଜୟପାଳ ଦୂର ସମ୍ପର୍କରେ ମହାରାଣୀଙ୍କର ଭଗିନୀ ପତି । ମହାରାଣା ଅନେକ ସମୟ ଚିନ୍ତା କରି ଦେଖିଲେ—ଆପଣ ଯାହା କହିଲେ, ସବୁ ବୁଝିଲି, ମାତ୍ର ଗୋଟିଏ ଅସମ୍ପୂର୍ଣ୍ଣ ବିବାହ ସମ୍ପୂର୍ଣ୍ଣ ହେବା ପୂର୍ବରୁ ଦ୍ୱିତୀୟ ଦାର ପରିଗ୍ରହ ଶାସ୍ତ୍ର ସଙ୍ଗତ ନୁହେଁ ।

ବିଜୟପାଳ—ଯଦି ଅପରାଧ ମାର୍ଜନା କରିବେ ତେବେ ଗୋଟିଏ ପ୍ରଶ୍ନ କରିବି ?

କହନ୍ତୁ, ଭୟ କ'ଣ ?

ଶାସ୍ତ୍ର ପ୍ରତି ମହାରାଣାଙ୍କର ଏ ଅଚଳା ଭକ୍ତି କେଉଁଦିନ ଜନ୍ମିଲା ଦେବୀ କର୍ଣ୍ଣାବତୀଙ୍କ ଅନିଚ୍ଛା ସତ୍ତ୍ୱେ କମଳା ଦେବୀଙ୍କୁ ବିବାହ କରିବା କେଉଁ ଶାସ୍ତ୍ରାନୁମୋଦିତ । ଶିଶୁ ପୁତ୍ର ପରି କ୍ରୁଦ୍ଧ ହୋଇ ଅଜ୍ଞାତ ବାସରେ କମଳା ଦେବୀଙ୍କ ସହିତ ବାସ କରିବା କେଉଁ ଶାସ୍ତ୍ରାନୁମୋଦିତ । ବିଜୟପାଳ ଉତ୍ତର ପାଇବାକୁ ଅପେକ୍ଷା ନକରି ପ୍ରସ୍ଥାନ କରନ୍ତେ, କକ୍ଷାନ୍ତରରୁ ରାଣୀ କମଳା ଦେବୀ ଓ କର୍ଣ୍ଣାବତୀ ସହସା ମହାରାଣାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ରାଣୀ କମଳା ଦେବୀ କହିଲେ—ମହାରାଜ ! ଏଥି ମଧ୍ୟରେ ଅନେକ କାଣ୍ଡ ହୋଇ ଯାଇଅଛି । ବର୍ତ୍ତମାନ ଉପାୟ ଚିନ୍ତା କରନ୍ତୁ ।

ରଣା—ମୁଁ ବିଜୟପାଳଠାରୁ ସମସ୍ତ ଅବଗତ ହୋଇଅଛି । ତେବେ ବର୍ତ୍ତମାନ କି ଉପାୟ କରା ଯାଇପାରେ ?

କମଳା—କି ଉପାୟ କରାଯିବ, ତାହା ବି କଣ ମୁଁ କହିବି ? ମହାରାଜ, ଆପଣଙ୍କ ହୃଦୟରେ କଣ ଟିକିଏ ଦୟା ମାୟା ନାହିଁ । ତରୁଣ ପୁତ୍ର ଅମର ବର୍ଷେ କାଳ କେତେ କଷ୍ଟ ସହି ଏତେ ଦିନେ ହଜିଲା ଧନ ପାଇଛି । ଆପଣ ଆଉ ଏଥିରେ ପ୍ରତିବାଦ କରନ୍ତୁ ନାହିଁ । ଅମରର ମନୋବାଞ୍ଛା ପୂର୍ଣ୍ଣ କରନ୍ତୁ । ପୁରୁଷର ହୃଦୟ କଣ ବିଧାତା ପଥରରେ ଗଢ଼ିଥିଲେ ।

ରଣା—ତେବେ କଣ ତୁମର ଇଚ୍ଛା, ଏକ ପତ୍ନୀ ଥାଉଁ ଥାଉଁ ଅନ୍ୟ ବିବାହର ଉଦ୍ୟୋଗ କରାଯିବ ?

କମଳା—ସେ ତ ମୋର ଦୋଷ । ମୁଁ ଛଳନା କରି ବିକ୍ରମ ସିଂହଙ୍କ କନ୍ୟା ସହିତ ଅମରର ବିବାହ ବ୍ୟବସ୍ଥା କରିଥିଲି । ମୁଁ ଅଭାଗିନୀ କଣ ଯେତେବେଳେ ଜାଣିଥିଲି, ଜୟପୁର ରାଜକୁମାରୀ ସହିତ ଅମରର ସାକ୍ଷାତ୍ ହୋଇଥିଲା । ମୁଁ ଅଭାଗିନୀ ଯେବେ ଆପଣଙ୍କୁ ଡର ସମୁଦ୍ର ତଟକୁ ଘେନି ଆସି ନଥାନ୍ତି, ତେବେ ଅମର କାହିଁକି ଏତେ କଷ୍ଟ ପାଇଥାନ୍ତା, ଆଉ ଏକ ଧର୍ମପତ୍ନୀ ସତ୍ତ୍ୱେ ଦ୍ୱିତୀୟ ଦାର ପରିଗ୍ରହ ପ୍ରଥା ତ ଏ ବଂଶରେ ନୂତନ ନୁହେଁ । ଆପଣ ଇତି ପୂର୍ବେ କଦାପି ଏ ପ୍ରଥା ନିନ୍ଦନୀୟ ବୋଲି ବିବେଚନା କରିନାହାନ୍ତି ।

ରଣା କିଞ୍ଚିତ୍ ଅପ୍ରତିଭ ହୋଇ କହିଲେ—ଯେତେବେଳେ ତୁମ୍ଭେମାନେ ସମସ୍ତେ ଏଥିରେ ଏକମତ, ମୋର ଅସମ୍ମତି ବିଡମ୍ବନା ମାତ୍ର ।

—୧୯—

## ସନ୍ୟାସିନୀର ଭିକ୍ଷା

ବୃନ୍ଦାବନ ପର୍ଯ୍ୟନ୍ତ ଅମର ସିଂହ ହସ୍ତୀ, ଅଶ୍ୱ ପଦାତିକ ସମଭି-ବ୍ୟାହରରେ ବିବାହ ଯାତ୍ରା କରିବାର ସ୍ଥିରିକୃତ ହେଲା । ରଣା ଜୟସିଂହ ଯଥାର୍ଥରେ ଆକ୍ଷେପ କରି କହିଥିଲେ, ଏ ମ୍ଳେଚ୍ଛ ଦଳିତ ରାଜପୁତନାର ଅତୁଳ ଐଶ୍ୱର୍ଯ୍ୟ କେବଳ ହସ୍ତୀ ଅଶ୍ୱ ସାର ହୋଇ ରହିଲା । ଆଜି ସୁଦ୍ଧା ତିନିବର୍ଷ ଉତ୍ତାରୁ ଦଗ୍ଧ ସର୍ବସ୍ୱ ରାଜପୁତନାର ବିଲୁପ୍ତ ଗୌରବର ଭଗ୍ନାବଶେଷ ମଧ୍ୟରେ ସେହି ନିର୍ବାପିତ ବହ୍ନିର କଣା ମାତ୍ର କେବଳ ହାତୀ ଘୋଡାରେ ଦେଖିବାକୁ ମିଳେ ।

ନିମିଷକ ମଧ୍ୟରେ କମଳା ଦେବୀଙ୍କ ଆଦେଶ ଅନୁସାରେ ଦଶ ସହସ୍ର ତେଜୋଗର୍ବଶାଳୀ ରଣ କୁଶଳ ସୁନ୍ଦର ଅଶ୍ୱ ହେଷାରବରେ କୁଦିନ କରୁ କରୁ ପ୍ରାସାଦ ପ୍ରାଙ୍ଗଣ ଶୋଭିତ କଲେ । ଦେଖୁ ଦେଖୁ ସେମାନଙ୍କ ପାର୍ଶ୍ୱଦେଶରେ ପାଞ୍ଚଶତ ମହା ବଳଶାଳୀ ହସ୍ତୀ ଧୀର ଗମ୍ଭୀର ପଦ ନିକ୍ଷେପରେ ପ୍ରାସାଦ ତଳେ ଦଣ୍ଡାୟମାନ ହେଲେ ।

କମଳା ଦେବୀ ସହର୍ଷରେ ପ୍ରାସାଦ ପ୍ରାଙ୍ଗଣ ନିରୀକ୍ଷଣ କରି ଅମର ସିଂହଙ୍କୁ ବରବେଶରେ ଭୂଷିତ କରିବାକୁ ଅହ୍ୱାନ କଲେ । ମହିଷୀ କର୍ଣ୍ଣାବତୀ ଆଜି ଏ ଆନନ୍ଦ ଉତ୍ସବ ଦିନରେ ଏକାକିନୀ ବିଷର୍ଣ୍ଣ ବଦନରେ ଆପଣା କକ୍ଷ ମଧ୍ୟରେ ଉପବେଶନ କରି ଖଣ୍ଡିଏ ପତ୍ର ପାଠ କରୁଅଛନ୍ତି ।

ରାଜପୁତ ରାଜେଶ୍ୱରୀ ! ଶୁଣିଲି, ଆପଣଙ୍କ ପୁତ୍ର କୁମାର ଅମର ସିଂହ ଜଣେ ସନ୍ୟାସିନୀର ପାଣି ଗ୍ରହଣ କରିବେ ବୋଲି ଅତିଶୀଘ୍ର ମହା ସମାରୋହରେ ବୃନ୍ଦାବନକୁ ଆସିବେ । ଏ ଜନ୍ମ ଦୁଃଖିନୀ ସନ୍ୟାସିନୀ ଯେଉଁଦିନ ରାଧାଶ୍ୟାମଙ୍କ ଶ୍ରୀଚରଣରେ ଆଶ୍ରୟ ଗ୍ରହଣ କରିଅଛି, ସେ ସ୍ୱପ୍ନରେ ହେଁ ଭାବିନାହିଁ ଯେ, ଏ ପବିତ୍ର ଆଶ୍ରମରେ ହେଁ ମାନବର ଅଧିକାର ଅଛି, ପୁଣି ବିସ୍ମିତ ହେଲି, ସ୍ୱୟଂ ରାଜାଧିରାଜ ଜୟସିଂହ ଦୟାଧର୍ମରେ ଜଳାଞ୍ଜଳି ଦେଇ ଅଭାଗିନୀ ସଂସାର ତ୍ୟାଗିନୀ ସନ୍ୟାସିନୀକୁ ରାଧାନାଥଙ୍କ ଚରଣ ତଳୁ ଅପହରଣ କରି ନେବାର ସଂକଳ୍ପ କରିଅଛନ୍ତି, କିନ୍ତୁ ଯେ ତ୍ରିଦିବନାଥଙ୍କ ଦାସୀ, ସେ କି ମର୍ତ୍ତ୍ୟଲୋକ ନାଥଙ୍କୁ ଗ୍ରାହ୍ୟ କରେ; କିନ୍ତୁ ମହାରାଣାଙ୍କୁ ଏ ନିଷ୍ଠୁର ସଂକଳ୍ପରୁ ନିବୃତ୍ତ କରାଇବା ଆପଣଙ୍କର କ'ଣ ଉଚିତ ନୁହେଁ ? ଅନ୍ୟଥା ନିଶ୍ଚୟ ଜାଣିବେ । ଆପଣଙ୍କ ପୁତ୍ର ବରବେଶରେ ମହା ସମାରୋହରେ ଆସି ଦେଖିବେ, ସେ ଯେଉଁ ସନ୍ୟାସିନୀ ପକାଶେ ଏତେ ଲାଳାୟିତ, ସେ ରାଧାନାଥଙ୍କ ଚରଣ ତଳେ ଜୀବନ ବିସର୍ଜନ କରିଅଛି ।

ଆପଣଙ୍କର ହତଭାଗିନୀ
ସନ୍ୟାସିନୀ ଅଞ୍ଜଳିକା

କର୍ଣ୍ଣାବତୀ ହତାଶ ହୃଦୟରେ ମର୍ମାହତ ପ୍ରାଣରେ ଚିନ୍ତା କରୁଅଛନ୍ତି । ଏମନ୍ତ ସମୟରେ କକ୍ଷର ଦ୍ୱାର ଉଦ୍‌ଘାଟିତ ହେଲା । କମଳା ଦେବୀ କକ୍ଷ ମଧ୍ୟରେ ପ୍ରବେଶ କରି କହିଲେ—ଏଇ କଣ ଲେଖାପଢ଼ା କରିବାର ସମୟ ? କମଳା ଦେବୀ କର୍ଣ୍ଣାବତୀଙ୍କ ହସ୍ତ ଧାରଣ କରି ବଳପୂର୍ବକ ତାଙ୍କୁ ଘେନିଗଲେ । କମଳା ଦେବୀ ସ୍ୱହସ୍ତରେ କୁମାର ଅମର ସିଂହଙ୍କୁ ମହାମୂଲ୍ୟ ରତ୍ନରାଜି ଶୋଭିତ ପରିଚ୍ଛେଦ ଓ ହୀରକଦମ ଖଚିତ ଉଷ୍ଣୀଷ ପିନ୍ଧାଇ ବରବେଶରେ ସଜ୍ଜୀଭୂତ କରିଦେଲେ । ଅମର ଶୁଭ ମୁହୂର୍ତ୍ତରେ ଯାତ୍ରା କଲେ ।

—୨୦—

## ଫକୀର ଓ ଦୁର୍ଗାଦାସ

କାଳନ୍ଦୀ ନଦୀ ତୀରସ୍ଥ ମସ୍‌ଜିଦ୍ ମଧ୍ୟରେ ବୃଦ୍ଧ ଫକୀର ଭୂତଳରେ ଉପବିଷ୍ଟ । ତାହାଙ୍କ ସମ୍ମୁଖରେ ବୀର ଦୁର୍ଗାଦାସ କମଳାସନରେ ଆସୀନ । ଦୁର୍ଗାଦାସଙ୍କ ରକ୍ତିମ ଲୋଚନ ଯୁଗଳରୁ ବାରିଧାରା ଅବିରଳ ବହୁଅଛି । ଅନେକ କ୍ଷଣ ପରେ ଦୁର୍ଗାଦାସ ଅଶ୍ରୁ ଜଳ ମୋଚନ କରୁ କରୁ ଫକୀରଙ୍କ ଆଡକୁ ନିରୀକ୍ଷଣ କରି କହିଲେ ଏତେ କାଳ ପରେ ଦେବ ! ଆପଣଙ୍କ ମୁଖରୁ ଏ ନିଷ୍ଠୁର ନିରାଶ ବାଣୀ ଶୁଣିଲି ।

ଫକୀର ଉତ୍ତର କଲେ—ବତ୍ସ ! ନିୟତି ଲଙ୍ଘନ ମନୁଷ୍ୟର ସାଧ୍ୟାତୀତ । ତେଣୁ ମୁଁ କହେଁ, ଅନ୍ତତଃ ବର୍ତ୍ତମାନ କିଛିକାଳ ଲାଗି ଯବନ

ସଂଗ୍ରାମରୁ ବିରତ ହେବାକୁ ହେବ । ଏହି କେତେକ ଦିବସ ମଧ୍ୟରେ ବହୁସଂଖ୍ୟକ ହିନ୍ଦୁ ବୀର ଯବନ ହସ୍ତରେ ନିହିତ ହୋଇଅଛନ୍ତି । ବର୍ତ୍ତମାନ ରକ୍ତ ସ୍ରୋତ ନିବାରଣ ହେବା ଏକାନ୍ତ ଆବଶ୍ୟକ । ଯେ ଯଧପୁରର ଶିଶୁ ରାଜକୁମାର ଅଜିତ ନିଭୃତ ଶୈଳ ବାସରେ ରହିବା ନିଷ୍ଠ ଯୋଜନ । ଆଓରଙ୍ଗଜେବ ବର୍ତ୍ତମାନ ବିଷଦନ୍ତ ହୀନ ଫଣୀ । ଶିଶୁ ରାଜାଙ୍କ କେଶ ପର୍ଯ୍ୟନ୍ତ ସ୍ପର୍ଶ କରିବା ବର୍ତ୍ତମାନ ତାଙ୍କର ସାଧ୍ୟାତୀତ । ମୋର ଜୀବନର ମଧ୍ୟ ଚରମ କାଳ ଉପସ୍ଥିତ । ଏ ଶୋଣିତ ସ୍ରୋତ ନିବାରିତ ହେବାର ଦେଖିଲେ ସୁଖରେ ମୃତ୍ୟୁକୁ ଆଲିଙ୍ଗନ କରିବି ।

ଦୁର୍ଗାଦାସ ସାଶ୍ରୁ ନୟନରେ କହିଲେ—ବିଧାତାଙ୍କର କ'ଣ ଏଇ ଇଚ୍ଛା ! ମୁଁ ବିଶ୍ୱାସ କରିପାରୁ ନାହିଁ । ନିଖିଳ ଜଗତର ଅଧିପତି ଦୟାମୟ ପ୍ରଭୁ କ'ଣ ଏତେ ନିର୍ଦ୍ଦୟ ? ଏହିକି ତାଙ୍କର ମଙ୍ଗଳମୟ ବିଧାନ ? ଦେବ ! ଅବଶେଷରେ ଏ ନିଷ୍ଠୁର ପରାମର୍ଶ ଆପଣଙ୍କ ମୁହଁରୁ ଶୁଣିବାକୁ ହେଲା ।

ଫକୀର ଉତ୍ତର କଲେ—ଅଧୈର୍ଯ୍ୟ ହୁଅ ବତ୍ସ ! ନିଶ୍ଚୟ କରି କହିପାରେ, ଭାରତର ଏ ଅନ୍ଧ ତମସା ଚିରସ୍ଥାୟୀ ନୁହେଁ । ଧର୍ମର ଜୟ ଓ ପାପର ପରାଜୟ ଅବଶ୍ୟମ୍ଭାବୀ । ସମୟରେ ବିଧାତାଙ୍କର ଏ ଅଲଙ୍ଘନୀୟ ବିଧାନ ଭାରତବାସୀ ପ୍ରତ୍ୟକ୍ଷ କରିବେ । ତୁମ୍ଭେ କ'ଣ ଦେଖିପାରୁ ନାହଁ, ଆଓରଙ୍ଗଜେବଙ୍କ ପାପ ହେତୁରୁ ଆଜି ମୁସଲମାନ ରାଜ୍ୟ ଧ୍ୱଂସୋନ୍ମୁଖ ଓ ଆଓରଙ୍ଗଜେବ ଦାକ୍ଷିଣାତ୍ୟରୁ ଆଉ ରାଜଧାନୀକୁ ପତ୍ୟାବର୍ତ୍ତନ କରିବେ ନାହିଁ । ଅଚିରାତ ମୋଗଲ ରାଜ ଧ୍ୱଂସ ପ୍ରାପ୍ତ ହେବ । ତଦନନ୍ତର ବହୁ ଦୂରରୁ ମହାସାଗର ଅତିକ୍ରମ କରି ଅତୁଳ ଜ୍ଞାନଶାଳୀ, ଅମିତ ବିକ୍ରମ ଜାତି ବିଧାତାଙ୍କ ମଙ୍ଗଳମୟ ଆଦେଶ କ୍ରମେ ଭାରତରେ ଆବିର୍ଭୂତ ହେବେ । ଆଓରଙ୍ଗଜେବଙ୍କ ଭ୍ରମାତ୍ମକ ରାଜନୀତି ଭବିଷ୍ୟତରେ ସେହି ଜାତିକୁ ସତର୍କ କରାଇ ଦେଉଥିବ ।

ଦୁର୍ଗାଦାସ—ସେତେଦିନ ଯାଏ ଆମ୍ଭେମାନେ କଣ ନିଶ୍ଚିନ୍ତ ନିଶ୍ଚେଷ୍ଟ ହୋଇ ମୋଗଲ ସେବାରେ ଜୀବନ ଅତିବାହିତ କରିବୁ ?

ସହସା ଅନତି ଦୂରରେ ବିବିଧ ବାଦ୍ୟ ନିନାଦ ଓ ବହୁ ଲୋକଙ୍କ ଆନନ୍ଦ କୋଳାହଳ ଶ୍ରୁତି ଗୋଚର ହେଲା । ଦୁର୍ଗାଦାସ ବିସ୍ମିତ ହୋଇ କହିଲେ.....ଆଜି ଏ ବିଷାଦକାଳରେ ଏ ଆନନ୍ଦ କୋଳାହଳ କାହିଁକି ?

ଫକୀର ସହାସ୍ୟ ବଦନରେ ଉତ୍ତର କଲେ—ବତ୍ସ ! ଆମ୍ଭେମାନେ ବହୁ ଦିନୁ ଜୀବନ ସଂଗ୍ରାମର ବିଭୀଷିକାମୟ ରକ୍ତ ସ୍ରୋତମୟ, ରଙ୍ଗଭୂମିରେ ବିଷାଦର ଭୀଷଣ ଅଭିନୟ ଦେଖିଅଛୁ, ଆସ, ଆଜି ପ୍ରୀତି ପୂର୍ଣ୍ଣ ହୃଦୟରେ ଏ ଆନନ୍ଦ ଅଭିନୟରେ ଯୋଗ ଦେବା ।

—୨୧—

## ତୋରଣ ପ୍ରବେଶ

ଅତି ବୈରାଗ୍ୟବ୍ରତ ସନ୍ୟାସୀମାନଙ୍କର ଶାନ୍ତିମୟ ଆଶ୍ରମ ରାଧାଶ୍ୟାମଙ୍କ ପ୍ରେମ ନିବେଦନ ବୃନ୍ଦାବନ ସହସା କୋଳାହଳମୟ ରାଜଧାନୀରେ ପରିଣତ

ହୋଇଅଛି । ଯମୁନା ସୈକତରେ ଅସଂଖ୍ୟ ଶିବିର ସ୍ଥାପିତ ହୋଇଅଛି । ତାହାର ଚତୁଃପାର୍ଶ୍ୱରେ ଅଗଣିତ ସେନାଦଳ ମଧ୍ୟରେ ଶତାଧିକ ରକ୍ତ ଉଷ୍ଣୀଷ ଚନ୍ଦ୍ରାଲୋକରେ ଝଳ ଝଳ ହେଉଛି । ସହସା ଯେପରି ମନ୍ତ୍ରମୁଗ୍ଧ ହୋଇ ସଂସାର ତ୍ୟାଗୀ ବୈରାଗିମାନେ ଚିରସନ୍ନ୍ୟାସ ବିଚ୍ୟୁତ ହୋଇ ଅଜି ପୁନର୍ବାର ସଂସାରର କୋଳାହଳରେ ଯୋଗ ଦେଇଅଛନ୍ତି । ସଂଗ୍ରାମବ୍ରତ କ୍ଷତ୍ରିୟ ଯୋଦ୍ଧାଗଣ ଆଜି ସମର ପ୍ରାଙ୍ଗଣ ପରିତ୍ୟାଗ କରି ଆନନ୍ଦ ଉତ୍ସବରେ ମାତି ଅଛନ୍ତି । ରାଜପୁତ ବୀରନାରୀମାନେ ଆଜି ଏ ପରିଣୟ ଉତ୍ସବରେ ଯୋଗ-ଦେବା ଲାଗି ଆଗତ ହୋଇଅଛନ୍ତି । ଯୋଧପୁର ରାଜମହିଷୀ ଦେବୀ ଅରୁନ୍ଧତୀ ମଧ୍ୟ ଆଗମନ କରିଅଛନ୍ତି । ଆଜି ନରନାରୀ ସମସ୍ତଙ୍କ ମୁଖମଣ୍ଡଳରେ ଆନନ୍ଦ ଚିହ୍ନ ପ୍ରକଟିତ ହେଉଅଛି । କେବଳ ଜଣେ ମାତ୍ର ନବୀନ ତାପସୀ ଏ ଆନନ୍ଦ କୋଳାହଳରୁ ବହୁ ଦୂରରେ, ଏକାକିନୀ ଯମୁନା ସୈକତରେ ଉପବେଶନ କରି ନୀରବରେ ଅଶ୍ରୁ ଜଳସିକ୍ତ ଗୈରିକବସନ କମନୀୟ କନକଲତାରୁ ବିଚ୍ୟୁତ ହୋଇ ଭୂପୃଷ୍ଠରେ ଲୋଟୁଅଛି । ତାହାର ଆଲୁଲାୟିତ ଚିକୁରଦାମ ଅଯତ୍ନରେ ଧୂଳି ଧୂସରିତ ହେଉଅଛି । ତାହାର ନୀଳୋତ୍ପଳ ନୟନ ଯୁଗଳରୁ ଅବିରତ ବାରିଧାରା ଗଡୁଅଛି । ମନ୍ଦିରର ସମ୍ମୁଖରେ କୁସୁମମାଳା ଓ ସ୍ତବକ-ଦାମ ଶୋଭିତ ତୋରଣ ନିର୍ମିତ ହୋଇଅଛି । ତାହାର ଏକ ପାର୍ଶ୍ୱରେ କୁମାର ଅମର ସିଂହଙ୍କ ଶିବିର ଓ ଅପର ପାର୍ଶ୍ୱରେ ନାରୀଗଣଙ୍କ ଆବାସ ସ୍ଥାନ । ପ୍ରଦୋଷ କାଳରେ କୁସୁମ ଧନୁ ଓ କୁସୁମ ତୂଣ ହସ୍ତ ହୋଇ ରମଣୀଗଣ ତୋରଣର ଏକ ପାର୍ଶ୍ୱରେ ସମବେତ ହେଲେ । ତୋରଣର ଅପର ଦିଗରେ ରାଜପୁରୁଷଗଣ ଯୁଦ୍ଧ ବେଶରେ ସୁବର୍ଣ୍ଣ ଶୋଭିତ ହୋଇ ସୁବର୍ଣ୍ଣ ଧନୁ ଓ ତୂଣ ହସ୍ତରେ ବିରବେଶୀ କୁମାର ଅମର ସିଂହଙ୍କ ପାର୍ଶ୍ୱରେ ଦଣ୍ଡାୟମାନ ହେଲେ । ଏକ ପକ୍ଷରେ ସେନାପତି ବିଳାସକୁମାରୀ ଓ ଅପର ପକ୍ଷରେ ବିଜୟପାଳ । ଅମ୍ବର ବହୁ ଦିବସାବଧି ପ୍ରଚଳିତ ପ୍ରଥାନୁସାରେ ପାଣିଗ୍ରହଣ ଉତ୍ସବ ପୂର୍ବେ ବରଯାତ୍ରିମାନଙ୍କୁ କୁସୁମାୟୁଧା ରମଣୀମାନଙ୍କ ସହିତ ଯୁଦ୍ଧ କରି ଅନ୍ତଃପୁରରେ ପ୍ରବେଶ କରିବାକୁ ହୁଏ । * ବିଳାସ କୁମାରୀ ଓ ବିଜୟପାଳଙ୍କ ସେନାପତିତ୍ୱରେ ଏହିପରି ପରିଣୟ-ସଂଗ୍ରାମ ଓ ପୁରୁଷମାନଙ୍କ ପରାଜୟ ସ୍ୱୀକାର ଓ ନାରୀମାନଙ୍କର ବିଜୟ- ଉଲ୍ଲାସ ଧ୍ୱନି ଉଥିତ ହେବାବେଳେ ଦୂରରେ ନାରୀର କ୍ରନ୍ଦନ ଶ୍ରୁତିଗୋଚର ହେଲା ।

ଆନନ୍ଦ-ଗୀତି ନୀରବ ହେଲା, ନର ନାରୀ ସଂଗ୍ରାମ ଭଙ୍ଗ ହେଲା, ପ୍ରେମ କୋଳାହଳ ବିଷାଦ ରୋଳରେ ପରିଣତ ହେଲା, ନରନାରୀ ସମସ୍ତେ ହାହାକାର ରବରେ ଯମୁନା ତୀରକୁ ଧାବିତ ହେଲେ । ଯେଉଁଠାରେ ନବୀନ ତାପସୀ ନଦୀ ଗର୍ଭକୁ ଡେଇଁ ପଡ଼ିଥିଲେ, ଜଣେ ନାରୀ ସେ ସ୍ଥାନ ନିର୍ଦ୍ଦେଶ କରିଦେଲା । ତରଙ୍ଗିଣୀ କଳକଳ ନାଦରେ ଚନ୍ଦ୍ରଦେବଙ୍କୁ ବକ୍ଷରେ ଧାରଣ କରି ଲହରୀ ଛଳରେ ତାଳେ ତାଳେ ନୃତ୍ୟ କରୁଅଛି । ନବୀନ ତପସୀର ଚିହ୍ନ ମାତ୍ର ନାହିଁ ।

—୨୨—

## ବିଳାସ କୁମାରୀର ତ୍ୟାଗ

ବୃନ୍ଦାବନର ଅର୍ଦ୍ଧକୋଶ ଦୂରରେ ଯମୁନା ସୈକତୋପରି ଲତା ଗୁଳ୍ମାଚ୍ଛାଦିତ କ୍ଷୁଦ୍ର ନିର୍ଜନ ଉପବନରେ ଫକୀର ଅମ୍ବାଳିକାଙ୍କ ଅଚେତନ ଦେହ

* ଚୌହାନବଂଶୀୟ କୌଣସି କୌଣସି ରାଜବଂଶରେ ଅଦ୍ୟାପି ଏ ପ୍ରଥା ପ୍ରଚଳିତ ଅଛି ।

କ୍ରୋଡ଼ରେ ଧେନି ବସିଅଛନ୍ତି, ତାହାଙ୍କ ସମ୍ମୁଖରେ ବିଳାସ କୁମାରୀ ନୀରବରେ ଅଶ୍ରୁ ବିସର୍ଜନ କରୁଅଛି । ଫକୀର କହିଲେ—ବତ୍ସ ! ରୋଦନ କରିବାର କାରଣ ନାହିଁ । ବିଧାତାଙ୍କର ମଙ୍ଗଳମୟ ଇଚ୍ଛା ପୂର୍ଣ୍ଣ ହୋଇଅଛି ।

ବିଳାସ କୁମାରୀ କାତର କଣ୍ଠରେ କହିଲେ—ଦେବ ! ମୋର ଚିରପୋଷିତ ବାଞ୍ଛା ପୂରଣ କରନ୍ତୁ । ଅମ୍ବାଳିକାର ଜୀବନ ରକ୍ଷା କରନ୍ତୁ ।

ଫକୀର—ବତ୍ସ ! ତୁ ବୁଦ୍ଧିମତୀ ହୋଇ ଏପରି ନିବୁଦ୍ଧିତାର ପରିଚୟ ଦେବୁ ବୋଲି ମୁଁ ବିଶ୍ୱାସ କରି ନଥିଲି । ତୁ ଏତେଦିନ ଯାଏ ଅମର ସିଂହର ପ୍ରକୃତ ପରିଚୟ ରାଜ କୁମାରୀ ନିକଟରେ ପ୍ରକାଶ କରିନାହୁଁ କାହିଁକି ? ତାହାହେଲେ, ଏ ଭୀଷଣ ଦୃଶ୍ୟ ପ୍ରତ୍ୟକ୍ଷ କରିବାକୁ ହୋଇନଥାନ୍ତା । ସତେ କଣ ତୁ ଅମର ସିଂହ ସହିତ ଅମ୍ବାଳିକାର ବିବାହ ଉତ୍ସବ ଦେଖିବାକୁ ବ୍ୟାକୁଳା ?

ବିଳାସ କୁମାରୀ—ହାଁ ଦେବ ! ଏତେକାଳ ପରେ ପୂଜ୍ୟ ଆପଣ ମୋତେ ଅବିଶ୍ୱାସିନୀ ମନେକଲେ । ମୁଁ ଅଭାଗିନୀ ମନେ କରିଥିଲି, ଅମ୍ବାଳିକା ପରିଣୟ ଉତ୍ସବ କାଳରେ ତାହାର ପ୍ରିୟ ସାମାନ୍ୟ ସୈନିକକୁ ସହସା ରାଜ ବେଶରେ ଦେଖି ଏକାବେଳକେ ସବୁ ଦୁଃଖ ପାସୋରି ପକାଇବ । ସେ ଆଶା ଆଉ ପୂର୍ଣ୍ଣ ହେଲା ନାହିଁ । ଦେବ ! ମିନତି କରେଁ, କ୍ଷୁଦ୍ରବୁଦ୍ଧି ବାଳିକାର ଅପରାଧ ମାର୍ଜନା କରି ଅମ୍ବାଳିକାକୁ ଜୀବଦାନ ଦିଅନ୍ତୁ । ଶୀଘ୍ର କହନ୍ତୁ ଦେବ, ଆପଣଙ୍କୁ ନିରୁତ୍ତର ଦେଖି ମୋର ପ୍ରାଣ ବ୍ୟାକୁଳ ହେଉଅଛି । ଦେବ ! ମୋର ଅପୂର୍ଣ୍ଣ ଆଶା ସତେ କଣ ପୂର୍ଣ୍ଣ ହେବନାହିଁ ?

ଫକୀର—ବତ୍ସ ! କାତର ହୁଅ ନାହିଁ, ତୋର ସଖୀର ଜୀବନର କୌଣସି ଆଶଙ୍କା ନାହିଁ । ଆମ୍ଭେମାନେ ବିଧାତାଙ୍କ କୃପାରୁ ଯଥା ସମୟରେ ଉପସ୍ଥିତ ହୋଇଅଛୁଁ ।

ବିଳାସ କୁମାରୀ ସହର୍ଷରେ କହିଲେ—ତେବେ ଅନୁମତି ଦିଅନ୍ତୁ, ମୁଁ ମିବାର ରାଜକୁମାରଙ୍କ ନିକଟକୁ ଏ ଶୁଭ ସମ୍ବାଦ ଘେନିଯାଏ ।

ଫକୀର—ବତ୍ସ ! ଅପେକ୍ଷା କର, ଆହୁରି କେତେକ ପ୍ରଶ୍ନ ଅଛି, ଉତ୍ତର ଦିଅ । ଅମର ସିଂହ ଅମ୍ବାଳିକାର ବିବାହ ହେଲେ ତୋର ଅବସ୍ଥା କଣ ହେବ ? ଅମ୍ବାଳିକା ଚିର ଜୀବନ ତୋର ସ୍ଥାନ ଅଧିକାର କରିବ । ମୋ କପାଳର କଣ ଏଇଆ ଥିଲା ଯେ, ମୋର କନ୍ୟାର ଆଶ୍ରୟ ବୃକ୍ଷ ମୂଳରେ ମୁଁ ସ୍ୱହସ୍ତରେ କୁଠାର ଆଘାତ କରିବି ?

ବିଳାସ କୁମାରୀ ପୂର୍ବେ କଦାପି ଫକୀରଙ୍କ ମୁହଁରୁ କାତରୋକ୍ତି ଶୁଣି ନଥିଲେ । ସେ ଚିର ଆନନ୍ଦମୟ ପ୍ରୀତିପୂର୍ଣ୍ଣ ଆନନ ମଣ୍ଡଳରେ କଦାପି ବିଷାଦ କାଳିମାର ଛାୟା ଦୃଷ୍ଟ ହୋଇ ନଥିଲା । ବିଳାସ କୁମାରୀ ଭୂତଳରେ ଜାନୁପାତ ପୂର୍ବକ ସଂଯୁକ୍ତ କରରେ କହିଲେ ଗୁରୋ ! ଆପଣ ସର୍ବଜ୍ଞ ! ନାରୀର ମନୋବୃତ୍ତି କଣ ଆପଣଙ୍କୁ ଅଗୋଚର ? କୁମାର ଅମର ସିଂହ ମୋର ସ୍ୱାମୀ । ମୋର ଇହ ଜୀବନର ଇଷ୍ଟଦେବତା । ପରଲୋକରେ ଅଧୀଶ୍ୱର । ମୋର ଏ ଅକିଞ୍ଚିତ୍କର ପ୍ରାଣ କଣ ତାଙ୍କ ପ୍ରାଣ ଅପେକ୍ଷା ପ୍ରୀୟତର ? ଗୁରୁଦେବ ! ତାଙ୍କ ଚରଣରୁ କୁଶାଙ୍କୁର ଉତ୍ପାଟନ ଲାଗି ଏ ହୃଦୟର ଶୋଣିତ ଦାନ ସୁଖକର । ଆଶୀର୍ବାଦ କରନ୍ତୁ, ମୋର ହୃଦୟେଶ୍ୱର ତାଙ୍କର ପ୍ରାଣପ୍ରିୟା ଅମ୍ବାଳିକା ସଙ୍ଗେ ପରିଣୀତ ଦେଖି ଜୀବନ ସାର୍ଥକ କରେଁ ।

ଫକୀର କିଛିକ୍ଷଣ ଉର୍ଦ୍ଧ୍ୱକୁ ଅନାଇ ଦୀର୍ଘଶ୍ୱାସ ପରିତ୍ୟାଗ ପୂର୍ବକ କହିଲେ—ବିଧାତା ! ଏ ପାପତାପମୟ ଜଗତରେ ଏ ସ୍ୱର୍ଗୀୟ ପାରିଜାତ କାହିଁକି ସୃଷ୍ଟି କରିଥିଲ ?

ତଦନନ୍ତର ସେ କିୟତ୍‌କାଳ ମୁଦ୍ରିତ ନୟନ ହୋଇ ଚିନ୍ତାକରି କହିଲେ—ଯାଅ ବତ୍ସ ! ରାଜକୁମାରୀର ଜୀବନ ରକ୍ଷାର ସମ୍ବାଦ ଅମର ସିଂହଙ୍କୁ ବିଦିତ କର । ଆଶୀର୍ବାଦ କରେ ତୋହର ଆଶା ଫଳବତୀ ହେଉ ।

—୨୩—

## ସଫଳ ସ୍ୱପ୍ନ

ଯମୁନା ତୀରବର୍ତ୍ତୀ ଉପବନ ପ୍ରାତଃ ସୂର୍ଯ୍ୟ କିରଣ ସ୍ପର୍ଶରେ ମୃଦୁ ମୃଦୁ ହାସ୍ୟ କରୁଅଛି । ସ୍ରୋତସ୍ୱତୀର କଳନିନାଦ ସଙ୍ଗେ ବିହଙ୍ଗ-କାକଳି ମିଶ୍ରିତ ହୋଇ ସୁଧାଂନ୍ତେ ଐକତାନିକ ବାଦ୍ୟ ନିନାଦରେ ନିର୍ଜନ ଯମୁନାତଟ ପ୍ରତିଧ୍ୱନିତ ହେଉଅଛି । ନିଦାଘ ପ୍ରଭାତରେ ଧୀର ସମୀରଣ ଯମୁନା ସଲିଳୋପରି ସନ୍ତରଣ କରି ବୁଲୁଅଛି, କେତେବେଳେ ଅବା କୁସୁମ କଳିକାକୁ ସ୍ନେହ ଭରେ ଆଳିଙ୍ଗନ କରୁଅଛି । ସେ ମଧୁର ଆଲିଙ୍ଗନର ଅନୁଭୂତି ଅନ୍ଦ କିକାର କର୍ଣ୍ଣନରେ କହି ଯାଉଅଛି—ଅମ୍ବାଳିକା ସେତେବେଳଯାଏ ସେ ନିର୍ଜନ ଉପବନରେ ଭୂଶଯ୍ୟାରେ ଶାୟିତା । ସନ୍ୟାସିନୀ ରାଜକୁମାରୀ ସୁପ୍ତ ବସ୍ଥାରେ ସ୍ୱପ୍ନ ଦେଖିଲେ ସେ ଶୋକକଷଣ ମର୍ତ୍ତ୍ୟ ଲୋକରୁ ଏକ ସଦାନନ୍ଦମୟ ସୁରଲୋକକୁ ନୀତ ହୋଇଅଛନ୍ତି । ସେହି ବିହଙ୍ଗ କୂଜକୁଞ୍ଜିତ ଅପ୍ସରା କଣ୍ଠ ନିନାଦିତ, ମୁକ୍ତାଲତା ହୀରକ ପୁଷ୍ପ ସୁଶୋଭିତ ସୁରଲୋକର ଅନିନ୍ଦ୍ୟ ଶ୍ରୀ ଅମରଗଣଙ୍କ ମଧ୍ୟଦେଶରେ ଫକୀର ଦେବସଜ୍ଜ ଉଜ୍ଜ୍ୱଳ କରି ଉପବେଶନ କରିଅଛନ୍ତି; ସେ ଯେପରି ଅମ୍ବାଳିକାକୁ ଦେଖିବା ମାତ୍ରେ କହିଲେ—ବତ୍ସ ! ଏଠାରେ ବିଷାଦ ନାହିଁ, ବୈଷମ୍ୟ ନାହିଁ, ବର୍ଣ୍ଣଭେଦ ନାହିଁ, ଏଠାରେ କ୍ଷୁଦ୍ର ମହତ, ଧନୀ ଦରିଦ୍ର, ରାଜା ପ୍ରଜା ସମସ୍ତେ ସମାନ । ଅମ୍ବାଳିକା ଦୀର୍ଘ ନିଶ୍ୱାସ ତ୍ୟାଗକରି ମନେ ମନେ ଭାବୁଅଛନ୍ତି—ତେବେ ସେ ବୀର ଯୁବା ପାପ ପୃଥିବୀ ତ୍ୟାଗକରି କାହିଁକି ଏ ଶାନ୍ତିମୟ ଧାମକୁ ନ ଆସିଲେ ? ଫକୀର ତାଙ୍କର ମନୋଗତ ଭାବ ହୃଦୟଙ୍ଗମ କରି କହିଲେ, ଦେଖ ବତ୍ସ ! ପାପମୟ ନରଲୋକରୁ ସୈନିକ ଯୁବା ଏ ପୁଣ୍ୟମୟ ଧାମରେ ଉପନୀତ ହୋଇଅଛି । ରାଜକୁମାରୀ ସବିସ୍ମୟରେ ଦେଖିଲେ; ସୁନ୍ଦର ଅମର ବେଶରେ ଭୂଷିତ ହୋଇ ବୀର ଯୁବା ସହାସ୍ୟ ବଦନରେ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ । ରାଜକୁମାରୀ ବିସ୍ମୟରେ ଅଭିମାନରେ ତାଙ୍କୁ ତିରସ୍କାର କରି କହିଲେ—ଆପଣ ଏତେଦିନ ଯାଏ ମୋତେ ଏ ଆନନ୍ଦମୟ ଧାମକୁ ନେଇ ଆସି ନଥିଲେ କାହିଁକି ? ବୀରଯୁବା ରାଜକୁମାରୀଙ୍କ ହସ୍ତ ଧାରଣ କରି କାତର କରୁଣ କଣ୍ଠରେ କହିଲେ—କ୍ଷମା କର ରାଜକୁମାରୀ । ଏ ଜୀବନରେ ଆଉ ତୁମ୍ଭଙ୍କୁ ପରିତ୍ୟାଗ କରିବି ନାହିଁ ।

ସହସା ରାଜକୁମାରୀଙ୍କ ନିଦ୍ରାଭଙ୍ଗ ହେଲା । ସେ ଆଖି ମେଲି ଦେଖିଲେ ରକ୍ତଧିରକ୍ତ ବେଶୀ ବୀର ଯୁବା ସତକୁ ସତ ତାଙ୍କ ପାଦଦେଶରେ ଦଣ୍ଡାୟମାନ । ବୀର ଯୁବା ହଠାତ୍ ସ୍ୱୀୟ ବାହୁ ଦ୍ୱୟରେ ରାଜକୁମାରୀଙ୍କୁ ଆଲିଙ୍ଗନ କରି କହିଲେ—କ୍ଷମାକର ରାଜକୁମାରୀ । ମୁଁ ଆଉ ଏ ଜୀବନରେ ତୁମ୍ଭଙ୍କୁ ପରିତ୍ୟାଗ କରିବି ନାହିଁ ।

ଅମ୍ବାଳିକା ପୁନର୍ବାର ଚକ୍ଷୁ ମୁଦ୍ରିତ କରି ଅଚେତନ ପ୍ରାୟ ସେ ପ୍ରେମମୟ, ଅମୃତମୟ ବଦନମଣ୍ଡଳ ଅନ୍ତଶ୍ଚକ୍ଷୁରେ ଦର୍ଶନ କରିବାକୁ ଲାଗିଲେ । ବୀର ଯୁବା ରାଜକୁମାରୀଙ୍କୁ ସମ୍ବୋଧନ କରି ପୁନର୍ବାର କହିଲେ କ୍ଷମାକର, ରାଜନନ୍ଦିନୀ !

ରାଜକୁମାରୀ ଧୀରେ ଧୀରେ କହିଲେ—ଏଠାକୁ ଆପଣ କିପରି ଆସିଲେ ! ଆପଣଙ୍କର ଏ ରକ୍ତବେଶ ପରିଧାନ କାହିଁକି ? ଆପଣ ମୋଠାରେ କି ଅପରାଧ କରିଅଛନ୍ତି, ମୁଁ କ୍ଷମା କରିବି ? ବୀର ଯୁବା ଉତ୍ତର ଦେଲେ—

ରାଜନନ୍ଦିନୀ ! ମୁଁ ତୁମ୍ଭଙ୍କୁ ଆଜିଯାଏ କହିନାହିଁ—ମୁଁ ମିବାର ରାଜତନୟ ଅମର ସିଂହ ।

ଅମ୍ବାଳିକା ନୀରବ ନିଷ୍ପନ୍ଦ ନୟନରେ ଅମର ସିଂହଙ୍କ ଆଡ଼କୁ ଅନାଇ ରହିଲେ । ତାଙ୍କର ବାକ୍ୟ ସ୍ଫୁରିଲା ନାହିଁ, କଣ୍ଠ ରୁଦ୍ଧ ହୋଇଗଲା । ଅମର ସିଂହ ରାଜନନ୍ଦିନୀଙ୍କ କର ଧାରଣ କରି କହିଲେ, ରାଜକୁମାରୀ ! ମୋର ପୂର୍ବ ବୃତ୍ତାନ୍ତ ଜାଣିଲେ, ତୁମ୍ଭେ ଅବଶ୍ୟ ମୋତେ କ୍ଷମା କରିବ । ମୁଁ ଜନନୀଙ୍କ ଆଦେଶ କ୍ରମେ ଗିରିଦୁର୍ଗ ମଧ୍ୟରେ ଅଜ୍ଞାତବାସରେ ଥିଲି । ଏହି ସମୟରେ ଉପବନ ପାର୍ଶ୍ୱସ୍ଥିତ କଦମ୍ବ ତରୁର ଅନ୍ତରାଳରୁ କିଏ ଗାଇ ଉଠିଲା—ସଖୀ ହେ କେଶି ମଥନମୁଦାରମ୍ ।

ବିଳାସ କୁମାରୀ ଗୀତ ଗାଉ ଗାଉ ସହାସ୍ୟ ବଦନରେ ନବଦମ୍ପତୀଙ୍କ ନିକଟରେ ଉପସ୍ଥିତ ହେଲା । ଅମର ସିଂହ ଅମ୍ବାଳିକାଙ୍କ ହସ୍ତ ଛାଡ଼ିଦେଇ ପଶଙ୍କ ଗ୍ରବରେ ଦଣ୍ଡାୟମାନ ହେଲେ । ବିଳାସ କୁମାରୀ ଅମ୍ବାଳିକାଙ୍କ ହସ୍ତ ଧାରଣ କରି ବିଲୋଳ କଟାକ୍ଷରେ, କଣ୍ଟିତ ରୋଷ ପ୍ରକାଶପୂର୍ବକ କହିଲା—ତୁମ୍ଭେ ସାମାନ୍ୟ ସୈନିକ ହୋଇ ରାଜକୁମାରୀଙ୍କ ଅଙ୍ଗ ସ୍ପର୍ଶ କରିବାକୁ ସାହସ କର ।

## ଉପସଂହାର

ଫକୀର ଦୁର୍ଗାଦାସଙ୍କୁ ଯାହା କହିଥିଲେ ତାହା କାର୍ଯ୍ୟରେ ପରିଣତ ହେଲା । ଅଳ୍ପକାଳ ପରେ ଅଜିତ୍ ସିଂହଙ୍କୁ ଯୋଧପୁର ସିଂହାସନାଧିରୂଢ଼ କରାଇ ଯବନ ସଂଗ୍ରାମରୁ ଅବସର ଗ୍ରହଣ କଲେ । ମିବାରର ମହାରାଣା ଅତି ଯତ୍ନରେ ବହୁ ସମାଦରରେ ରାଠୋର ସେନାପତିଙ୍କୁ ଆପଣା ରାଜଧାନୀରେ ଅବସ୍ଥାନ କରିବା ଲାଗି ସଙ୍ଗରେ ନେଇଗଲେ । ଇତିହାସ ପାଠକଙ୍କର ସ୍ମରଣ ଥାଇପାରେ ଦୁର୍ଗାଦାସଙ୍କ ଅବଶିଷ୍ଟ ଜୀବନ ଅତୀବ ସୁଖରେ ମିବାର ରାଜଧାନୀରେ ଅତିବାହିତ ହୋଇଥିଲା, ଏବଂ ଅମର ସିଂହ ସିଂହାସନାରୋହଣ କରି ଦୁର୍ଗାଦାସଙ୍କ ବ୍ୟୟ ନିର୍ବାହାର୍ଥେ ଉଦୟପୁର ରାଜକୋଷରୁ ପ୍ରତ୍ୟହ ପାଞ୍ଚଶତ ମୁଦ୍ରା ଉପଢୌକନ ଦେଉଥିଲେ ।

ଅନ୍ତରେ ରାଜକୁମାରୀଙ୍କର ବିବାହର ତିନିଦିନ ପରେ ଫକୀର ମାନବ ଲୀଳା ସମ୍ବରଣ କଲେ । ସମସ୍ତଙ୍କର ବିଶ୍ୱାସ ଥିଲା ଯେ, ସେ କିଛିଦିନ ଲାଗି ଇହଲୋକରୁ ଅବସର ଗ୍ରହଣ କଲେ ମାତ୍ର । ଅମର ସିଂହଙ୍କ ଆଦେଶକ୍ରମେ ଆରାବଲୀ ଶୈଳୋପରି ତାଙ୍କର ପବିତ୍ର ସମାଧି ନିର୍ମିତ ହେଲା । ଅଦ୍ୟାପି ସେ ସ୍ଥାନ ସମାଧି ମନ୍ଦିର ନାମରେ ଅଭିହିତ ।

ପରିଣୟ ଉତ୍ସବ ଶେଷ ହେଲାପରେ ବିଳାସ କୁମାରୀଙ୍କୁ ଆଉ କେହି ଦେଖି ନଥିଲେ । ଅମ୍ବାଳିକା ଅନେକ ଦିନ ତାଙ୍କର ଅନୁସନ୍ଧାନ କରି କୌଣସି ତଥ୍ୟ ପାଇଲେ ନାହିଁ । ସାତବର୍ଷ ପରେ ଦିନେ ଅମର ସିଂହ ଓ ଅମ୍ବାଳିକା ଫକୀରଙ୍କର ସମାଧି ମନ୍ଦିର ଦର୍ଶନ କରିବାକୁ ଯାଇଥିଲେ । ଅନୁଚରବର୍ଗଙ୍କୁ ଦୂରରେ ରଖାଇ ସେ ଦୁହେଁ ନିର୍ଜନ ସନ୍ଧ୍ୟା ସମୟରେ ସମାଧି ମନ୍ଦିର ନିକଟରେ ଉପସ୍ଥିତ ହେଲେ । ସହସା ସେ ନିର୍ଜନ ପ୍ରାଣି ସମାଗମଶୂନ୍ୟ ଶୈଳ ଦେଶରେ ମାନବ କଣ୍ଠ ନିଃସୃତ ସଙ୍ଗୀତ ଧ୍ୱନି ଶ୍ରୁତ ହେଲା । ସେମାନେ ଅଗ୍ରସର ହୋଇ ଚନ୍ଦ୍ରାଲୋକରେ ଦେଖିଲେ, ଜଣେ ଶୁଭ୍ର ବସନା, ଆଲୁଳାୟିତ କୁନ୍ତଳା ରମଣୀ ସମାଧି ସ୍ତମ୍ଭ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ସଙ୍ଗୀତ ଗାନ କରୁଅଛି । ସେମାନେ ଅତୁରି ନିକଟକୁ ଆସି ଦେଖିଲେ—ବିଳାସ କୁମାରୀ ସେହି ନିର୍ଜନ କୌମୁଦୀ-ବିଧୌତ ଶୈଳଶୃଙ୍ଗ ପରି ପବିତ୍ର ସମାଧି ମନ୍ଦିରର ସମ୍ମୁଖରେ ଦଣ୍ଡାୟମାନ ହୋଇ ସଂଗୀତ ଗାନ କରୁଥିଲା । ଅଳ୍ପେ ଅଳ୍ପେ ତାହାର ଛାୟା ସନ୍ଧ୍ୟା କେଉଁଆଡ଼େ ଲୁଚିଗଲା ସେମାନେ ନିର୍ଣ୍ଣୟ କରି ନପାରି ଭଗ୍ନମନୋରଥ ହୋଇ ପ୍ରତ୍ୟାବର୍ତ୍ତନ କଲେ । —★—